# ଆଧ୍ୟାତ୍ମିକ କାମ ବିଜ୍ଞାନ

**Adhyatmika Kama Bijnana**

ରଚନା

**ପ. ଶ୍ରୀରାମ ଶର୍ମା ଆଚାର୍ଯ୍ୟ**

ଭାଷାନ୍ତର

**ବ୍ରହ୍ମବର୍ଚ୍ଚସ**


ପ୍ରକାଶକ

ଶ୍ରୀ ବେଦମାତା ଗାୟତ୍ରୀ ଟ୍ରଷ୍ଟ (TMD)

ଶାନ୍ତିକୁଞ୍ଜ, ହରିଦ୍ୱାର (ଉତ୍ତରାଖଣ୍ଡ)

ପିନ୍- ୨୪୯୪୧୧

ପ୍ରାପ୍ତିସ୍ଥାନ

**ଯୁଗଶକ୍ତି ଗାୟତ୍ରୀ ଭବନ**

ପ୍ଲଟ୍ ନଂ- ୬୯, ନୂଆସାହି

ରସୁଲଗଡ଼, ଭୁବନେଶ୍ୱର- ୧୦

ପଞ୍ଚମ ସଂସ୍କରଣ- ୨୦୨୨

**ମୂଲ୍ୟ- ୩୨.୦୦**

**Rs. 32.00**

## ସୂଚୀପତ୍ର



## ଭୂମିକା

*ନର ଓ ନାରୀ ଭିତରେ ଥିବା ପ୍ରାଣ ଓ ରୟି, ଅଗ୍ନି ଓ ସୋମ, ସ୍ୱାହା ଓ ସ୍ୱଧା ତତ୍ତ୍ୱର ମହତ୍ତ୍ୱ ସାମାନ୍ୟ ନୁହେଁ, ବରଂ ଅସାମାନ୍ୟ ଅଟେ । ସୃଜନ ଓ ଉଦ୍‌ଭବର, ଉତ୍କର୍ଷ ଓ ଆହ୍ଲାଦର ଅସୀମ ସମ୍ଭାବନା ତା ଭିତରେ ପରିପୂର୍ଣ୍ଣ ହୋଇ ରହିଛି । ପ୍ରଜା ଉତ୍ପାଦନ ତ ସେହି ମିଳନର ବହୁତ ସ୍ଥୂଳ ଓ ଅତ୍ୟନ୍ତ ତୁଚ୍ଛ ପରିଣାମ ଅଟେ । ଏ ସୃଷ୍ଟିର ମୂଳ କାରଣ ଓ ଚେତନାର ଆଦି ସ୍ରୋତ ଏହି ଦ୍ୱିବିଧ ସଂସ୍କରଣ ଓ ସଂଚରଣର ଉପଯୁକ୍ତ ମୂଲ୍ୟାଙ୍କନ କରାଯିବା ଉଚିତ । ଏହାର ସଦୁପଯୋଗ କିପରି ବିଶ୍ୱକଲ୍ୟାଣର ସର୍ବତୋମୁଖୀ ପ୍ରଗତିରେ ସହାୟକ ହୋଇପାରେ ଏବଂ ତାହାର ଦୁରୁପଯୋଗ କିପରି ମାନବ ଜାତିର ଶାରୀରିକ ତଥା ମାନସିକ ସ୍ୱାସ୍ଥ୍ୟକୁ ନଷ୍ଟକରି, କ୍ଷୀଣ ତଥା ବିକୃତ କରି ବିନାଶର ଗର୍ତ୍ତ ଭିତରକୁ ଠେଲି ଦେବା ଲାଗି ଦୁର୍ଦ୍ଦାନ୍ତ ଦୈତ୍ୟ ପରି ସର୍ବଗ୍ରାସୀ ସଙ୍କଟ ଉତ୍ପନ୍ନ କରିପାରେ ଓ ବର୍ତ୍ତମାନ କରୁଛି– ଏହିତଥ୍ୟ ଉପରେ ଦୃଷ୍ଟି ଦେବା ଆବଶ୍ୟକ ।*

# ଆଧ୍ୟାତ୍ମିକ କାମ ବିଜ୍ଞାନ

କେଉଁ କ୍ରିୟା ଦ୍ୱାରା ସୃଷ୍ଟିର ସଂଚରଣ ହୋଇଥାଏ ? ଏ ବିଷୟରେ ପଦାର୍ଥ ବିଜ୍ଞାନ ଅଣୁକୁ ପ୍ରଥମ ଏକକ ବୋଲି ମନେ କରେ । ବୈଜ୍ଞାନିକମାନେ କହନ୍ତି ଯେ ଅଣୁ ଅନ୍ତର୍ଗତ ନାଭିକ ତଥା ଅନ୍ୟାନ୍ୟ ଘଟକ ଯେଉଁ କ୍ରିୟାକଳାପ ଏକ ନିର୍ଦ୍ଦିଷ୍ଟ ପ୍ରକ୍ରିୟା ଅନୁସାରେ ସଂଚାଳନ କରିଥାନ୍ତି, ତାହାଦ୍ୱାରା ବିଭିନ୍ନ ଆଲୋଡ଼ନ ସୃଷ୍ଟି ହୋଇଥାଏ ଏବଂ ବସ୍ତୁର ସୃଷ୍ଟିଠାରୁ ଆରମ୍ଭ କରି ଉତ୍ପତ୍ତିର କ୍ରିୟା ବିଭିନ୍ନ ରୂପରେ ଚାଲିଥାଏ । ଏ ବିଶ୍ୱାସ ତିରିଶବର୍ଷ ତଳର ପୁରାତନ ବିଶ୍ୱାସ । ଏବେ ବିଜ୍ଞାନର ଆଧୁନିକତମ ଗବେଷଣାରୁ ଜଣାପଡ଼ିଛି ଯେ ଅଣୁ ଆରମ୍ଭ ନୁହେଁ, ବରଂ ଏହା ଏକ ପରିଣତି । ସୃଷ୍ଟିର ମୂଳ ହେଉଛି ଏକ ଚେତନା । ଏହା ପଦାର୍ଥ ଓ ବିଚାର– ଉଭୟରେ ସୁସମ୍ପନ୍ନ ବୋଲି କୁହାଯାଇପାରେ । ଏହି ଚେତନାକୁ କୁହାଯାଏ ପ୍ରକୃତି । ପ୍ରକୃତିର ସ୍ଫୁଲିଙ୍ଗକୁ ପରମାଣୁ କୁହାଯାଏ । ଏହାର ଗତିବିଧି ଉପରେ ସୃଷ୍ଟିର ଉଦ୍‌ଭବ, ବିକାଶ ଓ ବିନାଶ ଅବଲମ୍ବିତ ବୋଲି କୁହାଯାଇଥାଏ ।

ଅଧ୍ୟାତ୍ମବିଜ୍ଞାନ ଏହାଠାରୁ ଅଧିକ ଗଭୀର ପ୍ରଦେଶରେ ପ୍ରବେଶ କରେ ଏବଂ ପ୍ରକୃତି ଓ ପୁରୁଷର ମିଶ୍ରଣ ଯୋଗୁଁ ସୃଷ୍ଟିର ଆରମ୍ଭ ହୋଇଛି ବୋଲି ସ୍ୱୀକାର କରେ । ବୈଜ୍ଞାନିକ ପରିଭାଷା ଅନୁସାରେ ପ୍ରକୃତିକୁ ରୟି ଓ ପୁରୁଷକୁ ପ୍ରାଣ ବୋଲି କୁହାଯାଏ । ଏହାକୁ ଶକ୍ତି ଓ ଶିବ ନାମରେ ମଧ୍ୟ ନାମିତ କରାଯାଏ । ବେଦରେ ଏହାକୁ ସୋମ ଓ ଅଗ୍ନି ନାମରେ ନାମିତ କରାଯାଇଛି । ଏହାଠାରୁ ଅଧିକ ସ୍ପଷ୍ଟ ରୂପେ ବୁଝିବାକୁ ହେଲେ ତାହାକୁ ଋଣ (Negative) ଓ ଧନ (Positive) ବିଦ୍ୟୁତ୍ ଧାରା କୁହାଯାଇପାରେ । ବିଦ୍ୟୁତ୍ ବିଜ୍ଞାନ ବିଷୟରେ ଧାରଣା ଥିବା ଲୋକମାନେ ଜାଣନ୍ତି ଯେ ପ୍ରବାହ (Current)ର ପୃଷ୍ଠଭୂମିରେ

ଉପର୍ଯ୍ୟୁକ୍ତ ଉଭୟ ଧାରାର ସଂଯୋଗ ବିଯୋଗ ଘଟିଥାଏ । ଏହି ସଂଯୋଗ ବିଯୋଗର କ୍ରିୟା ନ ଥିଲେ ବିଦ୍ୟୁତ୍‌ର ସୃଷ୍ଟି ସମ୍ଭବ ହୋଇ ନ ପାରେ ।

ପ୍ରକୃତି ଓ ପୁରୁଷ ବିଷୟରେ ସାଂଖ୍ୟକାରଙ୍କ ମନ୍ତବ୍ୟ ହେଉଛି– ସେ ଦୁଇଟି ନିରନ୍ତର ସଂଯୋଗ– ବିଯୋଗର ସଂଘର୍ଷ– ଅପକର୍ଷର ପ୍ରକ୍ରିୟା ସଂଚରଣ କରିଥାନ୍ତି । ଫଳତଃ ପରା ଓ ଅପରା ପ୍ରକୃତି ନାମରେ ଅଭିହିତ ଏହି ସୃଷ୍ଟି ବୈଭବ ଆରମ୍ଭ ହୋଇଯାଏ । ଅଣୁକ୍ରିୟା ଦ୍ୱାରା ଆମେ ଏହାର ପ୍ରଥମ ପରିଚୟ ପାଉ । କାନ୍ଥଘଣ୍ଟାରେ ଦୋଳକ (Pendulum) ଲାଗିଥାଏ । ଗତିଚକ୍ରର ନିୟମ ଅନୁସାରେ ଏହାକୁ ଥରେ ହଲାଇ ଦେଲେ ତାହା ଆପେ ଆପେ ଦୋହଲିବା କାମ କରିଥାଏ ଏବଂ ଘଣ୍ଟାର କଳ କବ୍‌ଜା ଚାଲୁ ହୋଇଯାଏ । ପ୍ରକୃତି ଓ ପୁରୁଷ ନିରନ୍ତର ସେହିପରି ସଂଯୋଗ ଓ ବିଯୋଗ କ୍ରିୟା ସଂପାଦନ କରିଥାନ୍ତି ଓ କାନ୍ଥଘଡ଼ିର ଦୋଳକ (Pendulum) କ୍ରିୟାଭଳି ସୃଷ୍ଟିର କ୍ରିୟାକଳାପ ଚାଲିଥାଏ ।

ଏହି ସୂକ୍ଷ୍ମ ତତ୍ତ୍ୱଜ୍ଞାନକୁ ଅଧିକ ସ୍ପଷ୍ଟ ରୂପେ ବୁଝିବାକୁ ହେଲେ ତାହାକୁ ନର ଓ ନାରୀର ରୂପକ ଭାବେ ଅଭିହିତ କରାଯାଇ ପାରେ । ବ୍ରହ୍ମକୁ ନର ଓ ପ୍ରକୃତିକୁ ନାରୀର ପ୍ରତୀକ ବା ପ୍ରତିନିଧି ରୂପେ ମନେ କରାଯାଇ ପାରେ । ସୃଷ୍ଟିର ଉଦ୍‌ଭବ, ବିକାଶ ଓ ବିନାଶ କରୁଥିବା ଶକ୍ତି–ତ୍ରିବେଣୀକୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ନାମରେ ପ୍ରକାଶ କରାଯାଏ । ସେମିତି ଦେଖିଲେ ଏହା ଗୋଟିଏ ତତ୍ତ୍ୱ । କିନ୍ତୁ ତାହାର କ୍ରିୟା କଳାପର ପାର୍ଥକ୍ୟକୁ ଅଧିକ ସ୍ପଷ୍ଟ ରୂପେ ବୁଝିବା ଓ ବୁଝାଇବା ନିମନ୍ତେ ତିନି ଦେବତାଙ୍କ ନାମ ସଂଯୋଗ କରାଯାଇଛି । ଏହି ତିନି ଦେବତା ସପତ୍ନୀକ । ବ୍ରହ୍ମାଙ୍କ ପତ୍ନୀଙ୍କ ନାମ ସାବିତ୍ରୀ, ବିଷ୍ଣୁଙ୍କର ଲକ୍ଷ୍ମୀ ଓ ଶିବଙ୍କର ପତ୍ନୀ ଉମା ବୋଲି ସମସ୍ତେ ଜାଣନ୍ତି । ଏହି ଅଳଙ୍କାର ଦ୍ୱାରା ଗୋଟିଏ ତଥ୍ୟ ପ୍ରତିପାଦିତ ହୋଇଥାଏ । ସୃଷ୍ଟିର ଉଦ୍‌ଗମ କେବଳ ବ୍ରହ୍ମାଙ୍କ ଦ୍ୱାରା ନୁହେଁ, ବରଂ ପ୍ରକୃତିର ସଂଯୋଗ ଦ୍ୱାରା ସମ୍ଭବ ହୋଇଥାଏ । ନର ଓ ନାରୀ ଉଭୟ ମିଶି ଏକ ବ୍ୟବସ୍ଥିତ ଶକ୍ତିର ରୂପ ଧାରଣ କରନ୍ତି । ଏହି ମିଳନ ନ ହେବା ପର୍ଯ୍ୟନ୍ତ ଗତି ଓ ଚେତନା ଉତ୍ପନ୍ନ ହୋଇ ନ ଥାଏ । ସବୁ କିଛି ଶୂନ୍ୟ ଓ ନିଷ୍ପ୍ରାଣ ରୂପେ ପଡ଼ି ରହିଥାଏ । ନୃତତ୍ତ୍ୱ ବିଜ୍ଞାନ ଦୃଷ୍ଟିରୁ ପତି ପତ୍ନୀଙ୍କର ମିଳନ ସୃଷ୍ଟିର ସ୍ଥୂଳ କାରଣ ଅଟେ । ସଂଯୋଗ ବା ସମ୍ଭୋଗ ଫଳରେ ପ୍ରଜାର ଉତ୍ପତ୍ତି ହୋଇଥାଏ । ପ୍ରଜନନ

ପ୍ରକ୍ରିୟାରେ ମିଳନ- ବିଚ୍ଛେଦ କ୍ରମର ଏକ ସଂଘର୍ଷ ସମାନ ଆଲୋଡ଼ନ ସୃଷ୍ଟି ହୁଏ । ଏଥିରୁ ସୃଷ୍ଟିର ଅତି ସୂକ୍ଷ୍ମ କ୍ରିୟା କଳାପ ବିଷୟରେ ଅନୁମାନ କରାଯାଇପାରେ । ଶରୀରରେ ଜୀବନ ଏହି କ୍ରିୟାକଳାପ ଯୋଗୁଁ ଜୀବନ୍ତ ରହେ । ମାଂସପେଶୀଗୁଡ଼ିକର ଆକୁଞ୍ଚନ ପ୍ରସାରଣ ହୋଇଥାଏ ଏବଂ ଜୀବନ ଆରମ୍ଭ ହୋଇଯାଏ । ଶ୍ୱାସର ସଂଚରଣ, ହୃଦୟର ସ୍ପନ୍ଦନ, ଶିରା ପ୍ରଶିରାରେ ରକ୍ତ ପ୍ରବାହ, କୋଷମାନଙ୍କ କ୍ରିୟା ଏସବୁ ଏହି ସଂଯୋଗ ବିଯୋଗର, ଆକୁଞ୍ଚନ ପ୍ରସାରଣର ପ୍ରକ୍ରିୟା ଉପରେ ନିର୍ଭର କରିଥାଏ । ଏହି କ୍ରମରେ ବିଘ୍ନ ଆସିବା ମାତ୍ରେ ହିଁ ମୃତ୍ୟୁର ବିଭୀଷିକା ଉପସ୍ଥିତି ହୋଇଯାଏ । ଏହି ତଥ୍ୟ କେବଳ ଦେହରେ ଥିବା ଜୀବନ ପ୍ରତି ନୁହେଁ, ବରଂ ସମଗ୍ର ସୃଷ୍ଟି ପ୍ରତି ପ୍ରଯୁଜ୍ୟ । ସମୁଦ୍ରରେ ଉଠୁଥିବା ଜୁଆର ଭଟ୍ଟା ପରି ଏଠାରେ ସବୁକିଛି ଘଟୁଛି ସଂଯୋଗ ଓ ବିଯୋଗର ଆଧାର ଉପରେ । ଅଧ୍ୟାତ୍ମ ଭାଷାରେ ଏହାକୁ ପ୍ରକୃତି ଓ ପୁରୁଷ କିମ୍ୱା ରୟି ଓ ପ୍ରାଣ କୁହାଯାଏ ।

ଏହି ସର୍ବବ୍ୟାପୀ କ୍ରିୟା କଳାପ ଉପରେ ମାନବ ଜୀବନ ନିର୍ଭର କରେ । ପୁରୁଷ ଓ ପ୍ରକୃତିର ସଂଯୋଗରେ ଚାଲୁଥିବା ସୂକ୍ଷ୍ମ ଜୀବନ କ୍ରମ ପରି ନର ଓ ନାରୀର ମିଳନରେ ସ୍ଥୁଳ ଜୀବନର ସୃଷ୍ଟି ହୋଇଥାଏ । ତେଣୁ ସାମାଜିକ ଜୀବନର ନର ଓ ନାରୀର ମିଳନ ଏକ ଅନିବାର୍ଯ୍ୟ ଆବଶ୍ୟକତାରେ ପରିଣତ ହୋଇଛି । ବ୍ୟତିକ୍ରମ କଥା ଅଲଗା, ବାଧ୍ୟ ହେବା ଅବସ୍ଥାରେ କିମ୍ୱା ଅତି ଉଚ୍ଚକୋଟୀର ଆଦର୍ଶବାଦ ନର ଓ ନାରୀର ମିଳନକୁ ବର୍ଜିତ ରୂପେ ରଖିପାରେ । କିନ୍ତୁ ଏହା କେବଳ ବ୍ୟତିକ୍ରମ । ଏହା ସ୍ୱାଭାବିକ ନୁହେଁ କିମ୍ୱା ଏଥିରେ ସରଳ କ୍ରମବିକାଶର ସମାବେଶ ନାହିଁ । ନର ଓ ନାରୀର ସଂଯୋଗ ଫଳରେ ସ୍ୱାଭାବିକ ଜୀବନର ବିକାଶ ଘଟେ । ଏହି ତଥ୍ୟକୁ ସ୍ୱୀକାର କରିବା ସକାଶେ କାହାର କୌଣସି ଆପତ୍ତି ଥାଇ ନ ପାରେ ।

ଏହି ସଂଯୋଗ କେବଳ ପ୍ରଜନନ ପାଇଁ ଉଦ୍ଦିଷ୍ଟ ନୁହେଁ । ଇନ୍ଦ୍ରିୟ ତୃପ୍ତି ମଧ୍ୟ ଏହାର ଉଦ୍ଦେଶ୍ୟ ନୁହେଁ । ବଂଶ ବୃଦ୍ଧି ଏବଂ ଆହ୍ଲାଦର ଆବଶ୍ୟକତା ଏହି କ୍ରିୟା ଅନୁସରଣ କରିବା ସକାଶେ ପ୍ରେରିତ କରିପାରେ । କିନ୍ତୁ ନର ଓ ନାରୀର ମିଳନର ଆଧାର ଉପରେ ହେଉଥିବା ସଂଯୋଗ ମୂଳତଃ ସେମାନଙ୍କର ପ୍ରସୁପ୍ତ ଚେତନାକୁ ଜାଗ୍ରତ କରିବା ସକାଶେ ଉଦ୍ଦିଷ୍ଟ । ଜନ୍ମଠାରୁ ଆରମ୍ଭ କରି ମରଣ

ପର୍ଯ୍ୟନ୍ତ ଏହି ଆବଶ୍ୟକତା ସମାନ ଭାବରେ ରହିଥାଏ । ଶିଶୁ ଅବସ୍ଥାରେ ମାତାର ସ୍ତନ୍ୟପାନ କରିବା, କୋଳରେ ଖେଳିବା ଓ ଲାଳନ ପାଳନ ଏକ ଆବଶ୍ୟକତା । ମାତୃହୀନ ବାଳକ ଓ ପିତୃହୀନ ବାଳିକା ମନୋବିଜ୍ଞାନ ଦୃଷ୍ଟିରେ ଅନେକାଂଶରେ ଅବିକଶିତ ହୋଇ ରହିଥାନ୍ତି । ଭଉଣୀ ଭାଇଙ୍କ ସହିତ ଖେଳିବା ପରିବାରର ଶୋଭା ଅଟେ । ଯେଉଁ ଘରେ କେବଳ ପୁଅ କିମ୍ବା କେବଳ ଝିଅ ଥାଆନ୍ତି, ସେମାନଙ୍କଠାରେ ପ୍ରତିଭାର ସର୍ବତୋମୁଖୀ ବିକାଶ ଅନେକାଂଶରେ ବାଧାପ୍ରାପ୍ତ ହୋଇଥାଏ । ସେଠାରେ ସହଜରେ ମାନସିକ ଅପୂର୍ଣ୍ଣତା ଦେଖା ଦେଇଥାଏ । ଯୌବନର ଅଙ୍ଗନରେ ପାଦ ରଖିବା ମାତ୍ରେ ଦାମ୍ପତ୍ୟ ଜୀବନର ବ୍ୟବସ୍ଥା କରିବାକୁ ହୁଏ । ପରିଣତ ବୟସରେ ନାତି ନାତୁଣୀକୁ କୋଳରେ ଧରି ଏ ଆବଶ୍ୟକତା ପୂରଣ କରାଯାଇଥାଏ । ଏମିତି ପ୍ରକାରାନ୍ତରେ ନରନାରୀ ପ୍ରାୟ ପରସ୍ପର ସହିତ ଗୁନ୍ଥି ହୋଇ ରହିଥାନ୍ତି ଏବଂ ନିଜସ୍ୱ ବିଶେଷତ୍ୱ କାରଣରୁ ପରସ୍ପରର ପ୍ରତିଭାକୁ, ପ୍ରସୁପ୍ତ ଶକ୍ତିକୁ ଜାଗ୍ରତ କରିବାର ମହତ୍ତ୍ୱପୂର୍ଣ୍ଣ ଭୂମିକା ସମ୍ପାଦନ କରିଥାନ୍ତି ।

ମନୋବିଜ୍ଞାନ ବିଶାରଦ ଡା: ଫ୍ରୟେଡ୍ ''କାମ''କୁ ମାନବ ଜୀବନ ବିକାଶର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଆବଶ୍ୟକତା ରୂପେ ସ୍ୱୀକାର କରିଛନ୍ତି । ନର ଓ ନାରୀର ମିଳନ ଦ୍ୱାରା ଏହା ବିକଶିତ ହୋଇଥାଏ ବୋଲି ସେ କହିଛନ୍ତି । ପାଶ୍ଚାତ୍ୟ ଦେଶରେ ପ୍ରଜନନ କ୍ରିୟା ଏବଂ ସଂଯୋଗ ଅର୍ଥରେ ''କାମ'' ଶବ୍ଦର ପ୍ରୟୋଗ କରାଯାଇଥାଏ । ତେଣୁ ଏହା ଅଶ୍ଳୀଳ ପର୍ଯ୍ୟାୟଭୁକ୍ତ ହୋଇ ପଡ଼ିଛି । ଏହାକୁ ହେୟ ଦୃଷ୍ଟିରେ ଦେଖାଯାଉଛି । ତେଣୁ ଫ୍ରୟେଡଙ୍କ ଉପର୍ଯ୍ୟୁକ୍ତ ବକ୍ତବ୍ୟ ଆମ ପାଇଁ ରୁଚିକର ହେଉନାହିଁ । ବର୍ତ୍ତମାନ ଏହାକୁ ବୈଜ୍ଞାନିକ ପରିଭାଷାର ଆଧାର ଉପରେ ବିଚାର କରାଯାଉ । କିଛି ସମୟ ପାଇଁ ଏ ଶବ୍ଦର ପ୍ରଚଳିତ ଅର୍ଥକୁ ମନରୁ ଦୂର କରାଯାଉ । ଏହାପରେ ଏକ ନିଷ୍କର୍ଷରେ ଉପନୀତ ହେବାକୁ ପଡ଼ିବ ଯେ ସୃଷ୍ଟିର ମୂଳ କାରଣ ପ୍ରକୃତି ପୁରୁଷର ମିଳନରୁ ଆରମ୍ଭ କରି ଦାମ୍ପତ୍ୟ ଜୀବନ ଯାପନ କରିବା ପର୍ଯ୍ୟନ୍ତ ଚଳି ଆସୁଥିବା କାମ ପ୍ରକ୍ରିୟା ବିଶ୍ୱର ଏକ ଆବଶ୍ୟକତା । ଏହାକୁ ଅସ୍ୱୀକାର କଲେ କେବଳ ଆତ୍ମ ପ୍ରବଞ୍ଚନା ହୋଇପାରେ ।

ପ୍ରତ୍ୟେକ ବସ୍ତୁର ଦୁରୁପଯୋଗ ନିଷିଦ୍ଧ । ଅତି ସର୍ବତ୍ର ବର୍ଜନୀୟ । ଅବିବେକୀ ମନୁଷ୍ୟ ପ୍ରତ୍ୟେକ ଇନ୍ଦ୍ରିୟର ଦୁରୁପଯୋଗ କରିବାରେ କିଛି ବାକୀ

ରଖିନାହିଁ । ଜିହ୍ୱା କଥା ବିଚାର କରାଯାଉ । କଟୁ ଏବଂ ଅସତ୍ୟ ଭାଷଣଠାରୁ ଆରମ୍ଭ କରି ଅଭକ୍ଷ ଭକ୍ଷଣ ପର୍ଯ୍ୟନ୍ତ କୁପ୍ରବୃତ୍ତିର ଅଧୀନ ହୋଇ ମନୁଷ୍ୟ ନିଜର ଶାରୀରିକ, ମାନସିକ, ନୈତିକ, ଆର୍ଥିକ ସବୁପ୍ରକାରର ଅହିତ ହିଁ କରିଛି । ଏହା ଜିହ୍ୱାର ସ୍ୱାଦ ଓ ସମ୍ଭାଷଣ କ୍ଷମତାର ଦୋଷ ନୁହେଁ । ଏହାର ସଦୁପଯୋଗ କରାଗଲେ, ଜିହ୍ୱା ଆମ ଜୀବନର ବିକାଶ କ୍ରମର ମହତ୍ତ୍ୱପୂର୍ଣ୍ଣ ଭୂମିକା ସମ୍ପାଦନ କରିପାରେ । ସେମିତି ଜନନେନ୍ଦ୍ରିୟକୁ ସୀମିତ ଓ ସତ୍ ଉଦ୍ଦେଶ୍ୟରେ ପ୍ରୟୋଗ କରିବା ପାଇଁ ପ୍ରତିବନ୍ଧ ଯୁକ୍ତ କରିଦେଲେ, ସଂଯମ ଓ ବ୍ରହ୍ମଚର୍ଯ୍ୟର ମହତ୍ତ୍ୱକୁ ହୃଦୟଙ୍ଗମ କରି, ମର୍ଯ୍ୟାଦା ଭିତରେ ରହି, ତତ୍ ସଂପର୍କୀୟ କାମୋଲ୍ଲାସର ଲାଭ ଆହରଣ କରାଗଲେ, ସେଥିରେ କୌଣସି କ୍ଷତି ହେବ ନାହିଁ, ବରଂ ଲାଭ ହେବ । କ୍ଷତି ହୁଏ କେବଳ ଦୁରୁପଯୋଗରୁ । ଅମୃତର ମଧ୍ୟ ଦୁରୁପଯୋଗ କରାଗଲେ କ୍ଷତି ହୋଇଥାଏ । ବିଷର ସଦୁପଯୋଗ କରାଗଲେ ସେଥିରୁ ମଧ୍ୟ ଉପକାର ମିଳେ । କାମ ପ୍ରବୃତ୍ତି ହେୟ ନୁହେଁ । ତାହାର ଦୁରୁପଯୋଗ ହିଁ ଭର୍ତ୍ସନା ପାଇବାର ଯୋଗ୍ୟ ।

ପୁରୁଷ ଓ ନାରୀର ମିଳାମିଶାରେ ଯେତେ ଅଧିକ କଟକଣା କରାଯିବ, ସେତିକି ଅଧିକ ବିକୃତି ଉତ୍ପନ୍ନ ହେବ । ସତକଥା ହେଉଛି– ଅନାବଶ୍ୟକ କଟକଣା ହିଁ ହେୟ କାମ ପ୍ରବୃତ୍ତିକୁ ଉତ୍ତେଜିତ କରିଥାଏ । ପିଲା ମା'ଠାରୁ ଦୁଧ ପିଏ । ତାହାର ସ୍ତନ ସ୍ପର୍ଶ କରିବାରେ କୌଣସି ଅଶ୍ଳୀଳତା ପ୍ରକଟ ହୋଇ ନ ଥାଏ । କିମ୍ବା ଲଜ୍ଜା ଭଳି କିଛି ଖରାପ ଅନୁଭବ ହୋଇନଥାଏ । ଆଦିବାସୀ କ୍ଷେତ୍ରରେ ଅବିକଶିତ ଲୋକେ ବାସ କରୁଥିବା ସମାଜରେ ସ୍ତ୍ରୀମାନେ ଛାତି ଉପରେ ପ୍ରାୟ କୌଣସି ଆବରଣ ରଖି ନ ଥାନ୍ତି । ସେଠାରେ କେହି ଏହାକୁ ଅଶ୍ଳୀଳ ବୋଲି ମନେ କରନ୍ତି ନାହିଁ କିମ୍ବା କାମ ବିକାରକୁ ଉତ୍ତେଜିତ କରିବା ଭଳି କିଛି ଅଛି ବୋଲି ଅନୁଭବ କରି ନଥାନ୍ତି । ଏହା ଏକ ମାନସିକ କୁତ୍ସା ଏବଂ ନୀଚ ଧରଣର ବିଶ୍ୱାସ । ଏହି କାରଣରୁ ନାରୀର ସ୍ତନ ପରି ପରମ ପବିତ୍ର ଓ ଅଭିବନ୍ଦନୀୟ ଅଙ୍ଗ ବିକାରର ପ୍ରତୀକ ରୂପେ ପରିଗଣିତ ହୋଇଛି । କାମର ବିକୃତ ରୂପ ହିଁ ପ୍ରକୃତି ପ୍ରଦତ୍ତ ମନୁଷ୍ୟର ଏକ ଦିବ୍ୟ ସାମର୍ଥ୍ୟକୁ କୁତ୍ସିତ କରିଦେଇଛି । ଆମର ବୁଦ୍ଧି ଭ୍ରଷ୍ଟ ହୋଇଯାଇଛି । ପଶୁ ପକ୍ଷୀ ନଗ୍ନ ଅବସ୍ଥାରେ ରହନ୍ତି । ସେମାନଙ୍କ ଜନନେନ୍ଦ୍ରିୟ ଉପରେ କୌଣସି ପ୍ରକାର ଆବରଣ ନ ଥାଏ । ସମସ୍ତେ ଏକାଠି

ଖାଆନ୍ତି, ଶୁଅନ୍ତି । ଅଥଚ ସମୟାନୁକୂଳ ଆବଶ୍ୟକତା ନ ଥିଲେ କେହି କାହାଆଡ଼କୁ ଦୃଷ୍ଟି ଦେଇ ନଥାନ୍ତି । ଆକୃଷ୍ଟ ହେବା ତ ଦୂରର କଥା । ମନୁଷ୍ୟକୃତ ଗର୍ହିତ କାମଶାସ୍ତ୍ରକୁ ଯଦି ପୋଡ଼ି ଦିଆଯାଏ ଏବଂ ପ୍ରକୃତିର ସ୍ୱାଭାବିକ ପ୍ରେରଣା ଓ ଜୀବନ ବିକାଶର ପବିତ୍ର ଆବଶ୍ୟକତା ଉଦ୍ଦେଶ୍ୟରେ ସେହି ସଂଜୀବନୀ ଶକ୍ତିର ଉପଯୋଗ କରାଯାଏ, ତେବେ କାମ କ୍ରୀଡ଼ା ଗର୍ହିତ ନ ହୋଇ ଜୀବନୋତ୍କର୍ଷର ଏକ ମହତ୍ ଆବଶ୍ୟକତା ପୂର୍ଣ୍ଣ କରିବାରେ ସମର୍ଥ ହେବ ।

କନ୍ୟା, ଭଉଣୀ, ମା'ଙ୍କର ପୁତ୍ର, ଭାଇ ଓ ପିତାଙ୍କ ସହିତ ବିନୋଦ ତଥା ଉଲ୍ଲାସମୟ ସଂପର୍କ ଅହିତକର ନୁହେଁ, ବରଂ ହିତକାରକ ହୋଇପାରେ । ସେମିତି ନର ଓ ନାରୀ ମଧ୍ୟରେ ତିଆରି କରାଯାଇଥିବା ଏକ ଅବାଞ୍ଛନୀୟ ବିଭେଦର ପ୍ରାଚୀରକୁ ଯଦି ଭାଙ୍ଗି ଦିଆଯାଏ, ତେବେ ତାହା ଅହିତକର ହେବ କାହିଁକି ? ଦାମ୍ପତ୍ୟ ଜୀବନର କଥା ବିଚାର କରାଯାଉ । ସେଥିରୁ କୁତ୍ସାକୁ ଯଦି ଦୂର କରାଯାଏ ଏବଂ ପରସ୍ପର ସହଯୋଗ ଓ ଉଲ୍ଲାସ ଅଭିବର୍ଦ୍ଧନ ଯୋଗ୍ୟ ଅଂଶକୁ ପ୍ରଖର କରି ଦିଆଯାଏ, ତେବେ ବିବାହ ଉଭୟ ପକ୍ଷର ଅପୂର୍ଣ୍ଣତା ଦୂରକରି ଏକ ଅଭିନବ ପୂର୍ଣ୍ଣତା ସୃଷ୍ଟି କରି ପାରିବ । ଭଗବାନ ଶ୍ରୀକୃଷ୍ଣ ଏ ଦିଗରେ ଏକ କ୍ରାନ୍ତିକାରୀ ଶୁଭାରମ୍ଭ କରିଥିଲେ । ସେତେବେଳେ ଅବୋଧ ବାଳକ ଓ ବାଳିକାଙ୍କ ସହଚର ଅବସ୍ଥା ଉପରେ ପ୍ରତିବନ୍ଧକ ଥିଲା । ନର ଓ ନାରୀ ଯେକୌଣସି ବୟସର ବା ଯେକୌଣସି ମାନସିକ ଅବସ୍ଥାର ହୁଅନ୍ତୁ ନା କାହିଁକି, ସେମାନେ ମିଳାମିଶା କଲେ ଅନର୍ଥ ଉତ୍ପତ୍ତି ହୋଇପାରେ । ଲୋକମାନେ ଏମିତି ଏକ କାଳ୍ପନିକ ବିଭୀଷିକା ଗଢ଼ି ଦେଇଥିଲେ । ଏ ବିଶ୍ୱାସ ଜନସାଧାରଣଙ୍କ ମନୋଭୂମିକୁ ତମସାଚ୍ଛନ୍ନ କରି ରଖିଥିଲା । ପୁଅ ଓ ଝିଅ ପରସ୍ପର ସହିତ ମିଳାମିଶା କରିବାରେ ପ୍ରତିବନ୍ଧକ ଥିବା ଯୋଗୁଁ ଛୋଟ ଛୋଟ ପିଲାମାନେ ମଧ୍ୟ ମିଳିମିଶି ହସି ଖେଳି ପାରୁ ନ ଥିଲେ । ଭଗବାନ ଶ୍ରୀକୃଷ୍ଣ ଏହି କୁଣ୍ଠାକୁ ଅବାଞ୍ଛନୀୟ କହି ପୁଅଝିଅମାନଙ୍କ ସହିତ ହସ ଖେଳ କରିବା ପାଇଁ ନିମନ୍ତ୍ରଣ କରି ରାସଲୀଳା ପରି ଏକ ବିବେକପୂର୍ଣ୍ଣ ବ୍ୟବସ୍ଥା କରିଥିଲେ । ମନୁଷ୍ୟ ଜାତି ଭିତରେ ଗୋଟିଏ ଶ୍ରେଣୀକୁ ନାରୀ କୁହାଯାଉଛି ଓ ସେମାନଙ୍କର ଦାଢ଼ି ନିଶ ନାହିଁ ବୋଲି ଏପରି ଏକ ପାର୍ଥକ୍ୟର ପ୍ରାଚୀର ଗଢ଼ି ଦିଆଯାଇଛି ବୋଲି ସେ ମନେ କଲେ । ଅନ୍ୟବର୍ଗ

ପୁରୁଷ ଏବଂ ସେମାନଙ୍କର ନିଶ ଦାଢ଼ି ଅଛି ବୋଲି ସେମାନଙ୍କୁ ଅସ୍ପୃଶ୍ୟ ରୂପେ ଘୋଷଣା କରାଗଲା । ପ୍ରଜନନ ଅଙ୍ଗର ଗଠନରେ ପ୍ରକୃତି ପ୍ରଦତ୍ତ ପାର୍ଥକ୍ୟ ସୃଷ୍ଟି ବିଶେଷତ୍ୱ ଅଟେ । ଏହି ନଗଣ୍ୟ କାରଣକୁ ମୂଳ କରି ମନୁଷ୍ୟ ଜାତିର ଦୁଇ ପରସ୍ପର ପୂରକ ପକ୍ଷକୁ ଅଲଗା କରି ରଖାଯାଇଛି । ସେମାନେ ଯେବେ ଏକାଠି ହେବେ ତେବେ କେବଳ ଅନର୍ଥ ଚିନ୍ତା କରିବେ, ଅନର୍ଥ କରିବେ ବୋଲି ଧାରଣା ରହିଛି । ଏହା ମନୁଷ୍ୟ ପ୍ରତି ମନୁଷ୍ୟର ଅବିଶ୍ୱାସର ଚରମ ଅବସ୍ଥା । କଟକଣା ଜାରି କରି କାହାକୁ ସଦାଚରଣ ପାଇଁ ବାଧ୍ୟ କରାଯାଇ ନ ପାରେ । ଜେଲ ଭିତରେ ବନ୍ଦୀମାନେ ହାତକଡ଼ା, ଗୋଡ଼କଡ଼ାରେ ବାନ୍ଧି ହୋଇ ସୁଦ୍ଧା ବଡ଼ ବଡ଼ ଅନର୍ଥ କରୁଛନ୍ତି । ଓଢ଼ଣା ଓ ପରଦାର କଠୋର କଟକଣା ଥାଇ ସୁଦ୍ଧା ଦୁନିଆରେ କେଜାଣି କ'ଣ କ'ଣ ଘଟଣା ଘଟିଯାଉଛି । ଏକା ମା' ପେଟର ଭାଇ ଭଉଣୀ ଓ ପିତା ପୁତ୍ରୀ ପରି ବାହ୍ୟ ଆଚରଣ ଭିତରେ କେଜାଣି କେତେ ଅନର୍ଥ ହେଉଛି । ସେ କୁତ୍ସିତ କାହାଣୀ କହିଲେ ବା ଶୁଣିଲେ କିଛି ଲାଭ ନାହିଁ । ଏଠାରେ ଗୋଟିଏ ବିଷୟ ଚିନ୍ତା କରାଯାଇ ପାରେ । ମନୁଷ୍ୟର ସୌଜନ୍ୟ, ବିଶ୍ୱସନୀୟତା ଓ ପ୍ରାମାଣିକତାକୁ ବିକଶିତ କରାନଗଲେ ସବୁଠାରୁ କଡ଼ା କଟକଣା ମଧ୍ୟ ମନୁଷ୍ୟର ବୁଦ୍ଧି ଚାତୁରୀ ସହିତ ପ୍ରତିଯୋଗିତା କରିପାରିବ ନାହିଁ । ଆଇନ ଓ କଟକଣା ଥାଇ ସୁଦ୍ଧା ସେ ମନଇଚ୍ଛା ଯାହାକିଛି କରିପାରେ । ତାହାର ଶ୍ରଦ୍ଧା, ବିବେକଶୀଳତା, ଦୂରଦର୍ଶିତା ଏବଂ ଆଦର୍ଶବାଦିତାକୁ ବିକଶିତ କରି ମାନବୀୟ ଚରିତ୍ରନିଷ୍ଠାକୁ ପରିପକ୍ୱ କରିବାକୁ ପଡ଼ିବ । ଅନ୍ୟଥା କଡ଼ା କଟକଣା ଜାରି କଲେ ପରସ୍ପରର ସହଯୋଗରୁ ଉପଲବ୍ଧ ଅଗଣିତ ଭୌତିକ ଲାଭ ଏବଂ ଅସୀମ ଆତ୍ମିକ ଉତ୍କର୍ଷରୁ ବଞ୍ଚିତ ହେବାକୁ ପଡ଼ିବ ଏବଂ ଏହା ଫଳରେ ଅପରିମିତ କ୍ଷତି ହେବ । ଆମେ ସବୁବେଳେ ଅନୁନ୍ନତ ହୋଇ ରହିଯିବୁ । ଭଗବାନ ଶ୍ରୀକୃଷ୍ଣଙ୍କର ହାସ୍ୟ ପରିହାସ ଆନ୍ଦୋଳନର ପୃଷ୍ଠଭୂମିରେ ଏହି କ୍ରାନ୍ତିକାରୀ ଭାବନା କାମ କରୁଥିଲା ।

ଆଧ୍ୟାତ୍ମିକ କାମଶାସ୍ତ୍ରର ଜ୍ଞାନ ସର୍ବସାଧାରଣଙ୍କ ନିକଟରେ ପହଞ୍ଚିବା ଆବଶ୍ୟକ । ସେହି ପ୍ରଶିକ୍ଷଣକୁ ଅବାଞ୍ଛନୀୟ ଓ ଅଶ୍ଳୀଳ କୁହାଗଲେ ସୁଦ୍ଧା, ତାହା ଅପରିହାର୍ଯ୍ୟ । ଏହା ସୃଷ୍ଟିର ଏକ ମହତ୍ତ୍ୱପୂର୍ଣ୍ଣ ବିଷୟ । ପ୍ରକୃତି ଜୀବଜନ୍ତୁଙ୍କୁ ସୁଦ୍ଧା ଏହି ଜ୍ଞାନ ଦେଇଛି । ତେଣୁ ତାହାକୁ ଗୋପନ କରି ରଖାଯାଇ ନ ପାରେ ।

ବର୍ତ୍ତମାନ ଏହି ମହତ୍ତ୍ୱପୂର୍ଣ୍ଣ ବିଜ୍ଞାନର ସ୍ୱରୂପକୁ ବିକୃତ ଓ ଓଲଟା କରି ଦିଆଯାଇଥିବାରୁ ବିଶେଷ କରି ଏହି ପ୍ରଶିକ୍ଷଣ ଆବଶ୍ୟକ । ଯେଉଁ ପ୍ରଥା ଚାଲିଛି, ତାହାକୁ ବଳବତ୍ତର କରି ରଖିଲେ, ବୁଦ୍ଧିଯୁକ୍ତ ସମାଧାନ ଓ ବ୍ୟବସ୍ଥା ପ୍ରସ୍ତୁତ ନ କଲେ, ବିକୃତି ବଢ଼ିବ ଓ ଉତ୍ତରୋତ୍ତର ବୃଦ୍ଧି ପାଇବ । ଫଳରେ ମାନବଜାତି ଏକ ମହାନ୍ ଶକ୍ତିର ଦୁରୁପଯୋଗ କରି ନିଜର ସର୍ବନାଶ କରି ବସିବ ।

ଆଧ୍ୟାତ୍ମିକ କାମବିଜ୍ଞାନ ନର ଓ ନାରୀ ଭିତରେ ନିର୍ମଳ ସାମୀପ୍ୟକୁ ସମର୍ଥନ କରେ । ଦାମ୍ପତ୍ୟ ଜୀବନରେ ତାହାକୁ ଇନ୍ଦ୍ରିୟ ତୃପ୍ତି ଏବଂ କାମକ୍ରୀଡ଼ାରୁ ଉତ୍ପନ୍ନ ହୋଇଥିବା ହର୍ଷ, ଉଲ୍ଲାସର ପରିଧି ପର୍ଯ୍ୟନ୍ତ ବଢ଼ାଇ ଦିଆଯାଇପାରେ । ଏହା ସଙ୍ଗେ ସଙ୍ଗେ ସୌମ୍ୟ ସାମୀପ୍ୟ ଉପରେ କୌଣସି କଟକଣା ରଖାଯିବା ଅନୁଚିତ । ଦୁଇଜଣ ପୁରୁଷ ବା ଦୁଇଜଣ ନାରୀ ଯେକୌଣସି ବୟସର ହୋଇ ଥାଆନ୍ତୁ ନା କାହିଁକି, ସେମାନେ ଅବାଧ ରୂପେ କଥାବାର୍ତ୍ତା କରିପାରନ୍ତି । ହସି ଖେଳି ପାରନ୍ତି, ସ୍ନେହଯୁକ୍ତ ସାମୀପ୍ୟ ଲାଭ କରିପାରନ୍ତି । ଏହାଦ୍ୱାରା କୌଣସି ଅନୁଚିତ ଆଶଙ୍କା କରାଯାଇ ନ ଥାଏ । ଠିକ୍ ସେମିତି ନର ଓ ନାରୀ ଭିତରେ ପରସ୍ପର ପ୍ରତି ବ୍ୟବହାରକୁ ନିର୍ମଳ ତଥା ନିଷ୍କଳଙ୍କ ରଖାଯାଇ ପାରେ । ଏହା ଅତି ସରଳ । ଏହି ସୌମ୍ୟ ସରଳତା ଉପରେ କୌଣସି କଟକଣା ନ ରହିବା ଉଚିତ । କଟକଣାର ପ୍ରୟୋଗ ବହୁକାଳରୁ ଚଳି ଆସୁଛି । ତାହାର ନିଷ୍କର୍ଷ ଏହି ପ୍ରଥାକୁ ନିରର୍ଥକ ବୋଲି ପ୍ରମାଣ କରି ସାରିଛି । ପରଦାପ୍ରଥା ପ୍ରଚଳନକରି ଆମେ କ'ଣ ପାଇଛୁ ? କେବଳ ଏତିକି ହୋଇ ପାରିଛି ଯେ ନବାଗତା ବଧୂମାନେ ନିଜ ଶ୍ୱଶୁରାଳୟରେ ଯେଉଁ ଅବିଚ୍ଛିନ୍ନ ସ୍ନେହ ପାଇ ପାରିଥାନ୍ତେ, ଅଭିଜ୍ଞ ଗୁରୁଜନଙ୍କ ପରାମର୍ଶ ପାଇ ପାରିଥାନ୍ତେ, ନିଜ ଅସୁବିଧା ବିଷୟରେ ଆଲୋଚନା କରି ତାହାର ସମାଧାନ ପାଇ ପାରିଥାନ୍ତେ, ସେଥିରୁ ବଞ୍ଚିତ ରହିଯାନ୍ତି । ସ୍ୱଚ୍ଛନ୍ଦ ବିଚରଣ କରୁଥିବା ପକ୍ଷୀର ଆଖି ବନ୍ଦ କରି ଚାରିଆଡ଼େ ପରଦା ଲଗାଯାଇ ଥିବା ପିଞ୍ଜରାରେ ତାକୁ ରଖିଲେ ତାହାର ଅବସ୍ଥା ଯେମିତି ହୁଏ, ଠିକ୍ ସେମିତି ନବବଧୂଙ୍କୁ ଶ୍ୱଶୁରାଳୟର ବାତାବରଣ ପିତୃଗୃହର ବାତାବରଣଠାରୁ ଅଲଗା ବୋଧ ହୁଏ । ଭାବୁକ ସ୍ୱଭାବର କେତେକ କନ୍ୟା ଏହି ଆକାଶ ପାତାଳ ପରି ପରିବର୍ତ୍ତନ ଯୋଗୁଁ ବିଚଳିତ ହୋଇଥାନ୍ତି । ତେଣୁ ହିଷ୍ଟିରିଆ ଓ ଭୂତପ୍ରେତ ଯୋଗୁଁ ପାଗଳାମି ପରି କେତେକ ରୋଗ ସେମାନଙ୍କ ଠାରେ ଦେଖା ଦେଇଥାଏ । ଏପରି ଅବସ୍ଥାରେ

ହୀନ ଭାବନା ଜାତ ହେବା ଅତି ସ୍ୱାଭାବିକ । ସବୁଲୋକ ହସଖୁସିରେ ଘରେ ବାହାରେ ବୁଲୁଥିବେ, ହସୁଥିବେ, କଥା କହୁଥିବେ, ଅଥଚ ନୂତନ ବାତାବରଣରେ ଭାବୁକତା ଜନ୍ମ ହେଉଥିବା ଏବଂ ନୂତନ ପରିସ୍ଥିତି ସହିତ ଖାପ ଖାଇବା ପାଇଁ ପରିବାରର ମାନସିକ ସାହାଯ୍ୟ ଲୋଡୁଥିବା ଜଣେ ବୟସ୍କା ନାରୀ ଯଦି ମୁହଁ ଢାଙ୍କି ରଖି ଏକ କଟକଣାଯୁକ୍ତ ବନ୍ଦୀ ପରି ଘରକଣରେ ବସିବ, ତେବେ ନିଃସନ୍ଦେହର ତାହାର ମାନସିକ ପ୍ରଭାବ କୁଣ୍ଠା, ଅରୁଚି, ବିବଶତା ରୂପେ ପ୍ରକାଶ ପାଇବ । ଏହା ଫଳରେ ହୁଏତ ବିଦ୍ରୋହ ଜାତ ହେବ, ନଚେତ୍, ଅନ୍ତଃକରଣ ନିଜର ଅହଂ ସମାପ୍ତ କରି ସର୍ବଥା ଦୀନହୀନ ଓ ପରାଧୀନ ହୋଇଯିବ । ଉଭୟ ମନଃସ୍ଥିତି ଅବାଞ୍ଛନୀୟ ଅଟେ । ଏହା ଦ୍ୱାରା ନାରୀର ଭାବସମ୍ପଦ, ସୃଜନାତ୍ମକ ବିଭୂତି ନଷ୍ଟ ହୋଇପାରେ । ଏମିତି ହେବାର ଦୃଷ୍ଟାନ୍ତ ରହିଛି । ପ୍ରକୃତରେ ପରଦା ପ୍ରଥା ନବବଧୂଙ୍କ ପ୍ରତି ଯଥେଷ୍ଟ ଅନ୍ୟାୟ କରିଛି । ତାହାର ପରିଣାମ ସମସ୍ତ ସମାଜ ଭୋଗ କରୁଛି ।

ଏହି ଅସ୍ୱାଭାବିକ ପ୍ରକ୍ରିୟା ବଞ୍ଚି ରହିପାରିଲା ନାହିଁ । ପରଦାର ଉଦ୍ଦେଶ୍ୟ ତିଳେମାତ୍ର ସଫଳ ହେଲା ନାହିଁ । ତାହାର ଉଦ୍ଦେଶ୍ୟ ଥିଲା ନର ଓ ନାରୀ ମଧ୍ୟରେ ପରସ୍ପର ପ୍ରତି ଆକର୍ଷଣକୁ ବାଧା ଦେବା । ସେ ଉଦ୍ଦେଶ୍ୟ ସାର୍ଥକ ହେଲା କି ? ନବବଧୂ ଶ୍ୱଶୁରାଳୟରେ କେବଳ ଶାଶୁ, ଶ୍ୱଶୁର ଓ ଜ୍ୟେଷ୍ଠମାନଙ୍କ ଆଗରେ ଓଢଣା ଟାଣିଥାଏ । ସେମାନେ ବସ୍ତୁତଃ ତାହାକୁ ନିଜର କନ୍ୟା ବୋଲି ମନେ କରି ପାରନ୍ତି । ଯେଉଁମାନଙ୍କଠାରୁ ବିପଦର ଆଶଙ୍କା ଥାଏ, ସେମାନଙ୍କ ଆଗରେ ଓଢ଼ଣା ନ ଥାଏ । ଯଦି ବ୍ୟଭିଚାରକୁ ବାଧା ଦେବାର ସମସ୍ୟା ଥାଏ, ତେବେ ସେଥିପାଇଁ ଅଧିକ ସୁଯୋଗ ରହେ ପିତୃଗୃହର ସ୍ୱଚ୍ଛନ୍ଦ ବାତାବରଣରେ । ଶ୍ୱଶୁର ଘରେ ଯଦି ସେପରି କିଛି ଆକର୍ଷଣର ସୁଯୋଗ ଥାଏ, ତେବେ ପତି ତୁଳନାରେ ଅଧିକ ମୃଦୁଳ ଦେବର ପ୍ରତି ଆକର୍ଷଣ ରହିପାରେ । ତାଙ୍କ ପାଇଁ ଓଢ଼ଣା ନାହିଁ, ଅଥଚ ବୟସ୍କମାନଙ୍କ ଆଗରେ ଓଢ଼ଣା ? ଯେକୌଣସି ଯୁକ୍ତିଦେଇ ସୁଦ୍ଧା ଏ ମୂର୍ଖତାକୁ ସମର୍ଥନ କରାଯାଇ ନ ପାରେ । ଏଇ ମୂର୍ଖତା ଆଜି ପ୍ରଚଳିତ ।

ପରଦା ପ୍ରଥା ସେହି ବିଦେଶୀ ଶାସକଙ୍କର ଦାନ, ଯେଉଁମାନେ ଅନ୍ୟର ଝିଅ ବୋହୂଙ୍କୁ ପାପଦୃଷ୍ଟିରେ ଦେଖୁଥିଲେ ଏବଂ ସେମାନଙ୍କୁ ଅପହରଣ କରିବାରେ ପଛଘୁଞ୍ଚା ଦେଉ ନ ଥିଲେ । ସେତେବେଳେ ପରଦା ପ୍ରଥାର କିଛି ସାମାଜିକ ଉପଯୋଗିତା ଥିଲା । ଆରବର ମରୁଭୂମିରେ ବାଲିଝଡ଼ ହୋଇଥାଏ । ଆଖି,

କାନ, ନାକ, ମୁହଁକୁ ଆବର୍ଜନାରୁ ରକ୍ଷା କରିବା ଉଦ୍ଦେଶ୍ୟରେ ସେଠାରେ ପରଦା ପ୍ରଥା ପ୍ରଚଳନର କିଛି ଯୁକ୍ତି ଥାଇପାରେ । କିନ୍ତୁ ଭାରତର ବର୍ତ୍ତମାନ ପରିସ୍ଥିତି ଦୃଷ୍ଟିରୁ ଏଠାରେ ଓଢ଼ଣା ବା ପରଦା ପ୍ରଥାର ପ୍ରଚଳନ ନେଇ କୌଣସି କାରଣ ବୁଝା ପଡ଼େ ନାହିଁ । ଯୌବନ ଅଭିଶାପ ନୁହେଁ । ନାରୀ ଶରୀର ଲାଭ କରିବା କିଛି ପାପ ନୁହେଁ । ଏଇ ଈଶ୍ୱରୀୟ ଅନୁଦାନ ଉପରେ କଟକଣା ଆରୋପ କରାଗଲେ ତାହାର ପ୍ରତିକ୍ରିୟା ଅବାଞ୍ଛନୀୟ ତଥା ଅନୁପଯୁକ୍ତ ହେବ । ପରଦା ପ୍ରଥା ନାରୀର ମନୋବଳକୁ କ୍ଷୀଣ କରିଛି, ତା'ର ଅସୀମ କ୍ଷମତାକୁ ପଦଦଳିତ କରିଛି । ଏଣୁ ତା'ର ଉପଯୋଗିତା ହ୍ରାସ ପାଇଛି ଏବଂ ଏକ ବିଷମ ପରିସ୍ଥିତି ସୃଷ୍ଟି ହୋଇଛି । କନ୍ୟାର ବିବାହ ଦେବାକୁ ହେଲେ ବରପକ୍ଷ ଲାଞ୍ଚ ରୂପେ ଯୌତୁକ, ନଗଦଟଙ୍କା, ଗହଣାଗାଣ୍ଠି ଓ ଦାସତ୍ୱ ପରି ଦୈନ୍ୟ ଦାବି କରୁଛନ୍ତି । ନାରୀର ମୂଲ୍ୟ ଦୟନୀୟ ଭାବରେ ଖର୍ବ ହେବାପରେ ଏ ପରିସ୍ଥିତି ଆସିଛି । ତା'ର ଉଚିତ ମୂଲ୍ୟ ଯଦି ସ୍ଥିର କରାଯାଇଥାନ୍ତା, ତେବେ ବିନାମୂଲ୍ୟରେ ନିଜର ଶରୀର, ମନ ଓ ସହଯୋଗ ଦେଇ ମହାନ୍ ଆତ୍ମିକ ଦାନ ଦେଇଥିବାରୁ ବଧୂର ଶ୍ୱଶୁରଘରର ଲୋକମାନେ ତା'ର ପାଦ ଧୋଇ ସେ ପବିତ୍ର ଜଳ ପାନ କରନ୍ତେ । କିନ୍ତୁ ପଶୁ କିଣିଲା ପରି ଦାମ୍ ଦେଇ ନାରୀକୁ କିଣା ଯାଉଛି । ଅନେକ ଗୁଣରେ ବିଭୂଷିତା ବଧୂ ଘରକୁ ଆସିଲାବେଳେ ତା'ପ୍ରତି ଉପେକ୍ଷାଭାବ ପ୍ରଦର୍ଶନ କରାଯାଉଛି ଓ ସେଥିପାଇଁ ଲାଞ୍ଚ ଦାବି କରାଯାଉଛି । ଏହି ଦୟନୀୟ ସ୍ଥିତିର ପୃଷ୍ଠଭୂମିରେ ରହିଛି ନାରୀର ଅବମୂଲ୍ୟାୟନ । ଏହି ଅବମୂଲ୍ୟାୟନ ପରଦା ପ୍ରଥା ପରି ଅନୁଚିତ ଓ ଅବାଞ୍ଛନୀୟ କଟକଣା ରୂପେ ଆତ୍ମପ୍ରକାଶ କରିଛି ।

ଅଧ୍ୟାତ୍ମ ତତ୍ତ୍ୱଜ୍ଞାନର ଉପଦେଶ ନର ଓ ନାରୀ ଭିତରେ ଥିବା ସେହି ଅବାଞ୍ଛନୀୟ ପ୍ରାଚୀରକୁ ଧୂଳିସାତ୍ କରିବା ପାଇଁ ଉତ୍ସାହ ଦିଏ । ଏହି ପ୍ରାଚୀର ମନୁଷ୍ୟଠାରୁ ମନୁଷ୍ୟକୁ ଅଲଗା କରିଦେଇଛି ଏବଂ ପରସ୍ପର ପ୍ରତି ସହଯୋଗ କ୍ଷେତ୍ରରେ ଅସ୍ୱାଭାବିକ ଓ ଅପ୍ରାକୃତିକ କଟକଣା କରି ଦେଇଛି । ଯୌନବିକୃତି ଓ ବ୍ୟଭିଚାରଜନିତ ବିପଦ ନିବାରଣ ପାଇଁ ଅନ୍ୟ ଉପାୟ ଅଛି । ଏକକୁ ଅପରଠାରୁ ପୃଥକ୍ କରି ରଖିବାର ପ୍ରକ୍ରିୟା ଏ ପ୍ରୟୋଜନକୁ ପୂରଣ କରି ନପାରେ । ଏହି କଟକଣାର ଆଶ୍ରୟ ନେଇ ଅର୍ଦ୍ଧେକ ଜନସଂଖ୍ୟାକୁ ପଙ୍ଗୁ କରିଦେଇ ଆମେ ନିଜ ଗୋଡ଼କୁ ହାଣୁଛୁ । ସମଗ୍ର ସମସ୍ୟାର ଏକମାତ୍ର କାରଣ ବୌଦ୍ଧିକ ଭ୍ରଷ୍ଟାଚାର ।

ଏହା ନାରୀକୁ କାମିନୀ ଓ ରମଣୀ ରୂପେ ଅତିରଞ୍ଜିତ ଚିତ୍ରଣ କରି ତାକୁ ଏକ ଭୟାବହ ଡାଆଣୀ ରୂପେ ପ୍ରସ୍ତୁତ କରି ଦେଇଛି । ତଥାକଥିତ କଳାକାର, ଚିତ୍ରକାର, ମୂର୍ତ୍ତିକାର, କବି, ଗାୟକ, ସାହିତ୍ୟକାର, ଅଭିନେତାମାନେ ନାରୀର କୁତ୍ସିତ ଅଂଶକୁ ପ୍ରକଟ କରିଛନ୍ତି, ତାକୁ ଯୌନ ଆକର୍ଷଣର ପ୍ରତୀକ ରୂପେ ପରିଣତ କରିଛନ୍ତି ଏବଂ ସେହି ଭ୍ରାନ୍ତିକୁ ସଘନ କରିବା ପାଇଁ ନିଜର କଳାକୁ ନିୟୋଜନ କରିଛନ୍ତି ।

ନର ଓ ନାରୀ ଭିତରେ ଥିବା ପ୍ରାଣ ଓ ରୟି, ଅଗ୍ନି ଓ ସୋମ, ସ୍ୱାହା ଓ ସ୍ୱଧା ତତ୍ତ୍ୱର ମହତ୍ତ୍ୱ ସାମାନ୍ୟ ନୁହେଁ, ଅସାଧାରଣ ଅଟେ । ସୃଷ୍ଟି ଓ ଉଦ୍‌ଭବର ଉତ୍କର୍ଷ ଓ ଆହ୍ଲାଦର ଅସୀମ ସମ୍ଭାବନା ରହିଛି ତା ଭିତରେ । ପ୍ରଜା ଉତ୍ପାଦନ ସେହି ମିଳନର ଏକ ସ୍ଥୁଳ ଓ ତୁଚ୍ଛ ପରିଣାମ ଅଟେ । ଏ ସୃଷ୍ଟିର ମୂଳ କାରଣ ଏବଂ ଚେତନାର ଆଦି ସ୍ରୋତ ଏହି ଦ୍ୱିବିଧ ସଂସ୍କରଣ ଓ ସଂଚରଣର ଉଚିତ ମୂଲ୍ୟାଙ୍କନ ହେବା ଉଚିତ । ତାହାର ସଦୁପଯୋଗ ବିଶ୍ୱ କଲ୍ୟାଣର ସର୍ବତୋମୁଖୀ ପ୍ରଗତିରେ ସାହାଯ୍ୟ କରିଥାଏ ଏବଂ ଏହାର ଦୁରୁପଯୋଗ ମାନବଜାତିର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟକୁ ନଷ୍ଟ କରି, କ୍ଷୀଣ ଓ ବିକୃତ କରି ବିନାଶର ଗର୍ତ୍ତ ଭିତରକୁ ଠେଲି ଦେବା ସକାଶେ ଦୁର୍ଦ୍ଧାନ୍ତ ଦୈତ୍ୟପରି ସର୍ବଗ୍ରାସୀ ସଂକଟ ଉତ୍ପନ୍ନ କରେ । ଏହି ତଥ୍ୟ ଉପରେ ଦୃଷ୍ଟି ଦେବା ଉଚିତ ।

ସଂଯୋଗ କର୍ମ ଅଶ୍ଳୀଳ ଓ ଅବାଞ୍ଛନୀୟ ହୋଇପାରେ । ବିକାର ଉତ୍ତେଜକ ଶୈଳୀରେ ତାହାର ବର୍ଣ୍ଣନା ଅହିତକର ହୋଇପାରେ, କିନ୍ତୁ ସୃଷ୍ଟିର ଆଦି ଉଦ୍‌ଗମ ପ୍ରକୃତି ଓ ପୁରୁଷର ସଂଯୋଗ ଦ୍ୱାରା କିପରି ସେହି କ୍ରିୟା ସମ୍ପନ୍ନ ହୋଇଥାଏ, ତାହା ଜାଣିବା ଅନୁଚିତ କିମ୍ବା ଅନାବଶ୍ୟକ ନୁହେଁ । ସତକଥା ହେଉଛି– ଏହି ପଞ୍ଚାଗ୍ନି ବିଦ୍ୟାକୁ ଅବହେଳା ଓ ଅବମାନନା କରି ଆମେ ନିଜର ହିଁ ଅହିତ କରିଛୁ । ନର ଓ ନାରୀ ଭିତରେ ପ୍ରକୃତି ପ୍ରଦତ୍ତ ବିଦ୍ୟୁତ୍‌ଧାରା ସାହାଯ୍ୟରେ କେଉଁ ସୀମା ପର୍ଯ୍ୟନ୍ତ, କେଉଁ ଦିଗରେ ଓ କେତେ ଶ୍ରେୟସ୍କର ପ୍ରକ୍ରିୟା ଉତ୍ପନ୍ନ ହୋଇଥାଏ ଏବଂ ତାହାର ବିକୃତି କିପରି ବିନାଶର କାରଣ ହୋଇଥାଏ, ଏହି ଜ୍ଞାନକୁ ଆଧ୍ୟାତ୍ମିକ କାମ ବିଜ୍ଞାନ ନାମରେ ଅଭିହିତ କରାଯାଇପାରେ । ଏହାକୁ କେବଳ ଶାରୀରିକ ସୁଖ ବୃଦ୍ଧି କରିବାର ପ୍ରୟୋଜନ ବୋଲି କହିବା ଅନୁଚିତ ।

***

# ସୃଷ୍ଟିରେ ସଂଚରଣ ଓ ଉଲ୍ଲାସର ପ୍ରବୃତ୍ତି

ବ୍ରହ୍ମାଙ୍କର ଦୁଇ ପତ୍ନୀ ଥିବା ବିଷୟ ପୁରାଣରେ ଉଲ୍ଲେଖ କରାଯାଇଛି । ଏକ ପତ୍ନୀଙ୍କ ନାମ ସାବିତ୍ରୀ ଓ ଅନ୍ୟଙ୍କର ନାମ ଗାୟତ୍ରୀ । ଏହାକୁ ପରା ପ୍ରକୃତି ଓ ଅନ୍ୟକୁ ଅପରା ପ୍ରକୃତି କୁହାଯାଏ । ଅନ୍ୟ ଶବ୍ଦରେ ଏହାକୁ ଜଡ଼ ଓ ଚେତନ ସୃଷ୍ଟି କୁହାଯାଇପାରେ । ଅଣୁ ଶକ୍ତିର ପୃଷ୍ଠଭୂମିରେ କାମ କରୁଥିବା ପ୍ରେରକ ସତ୍ତାରୁ ଯାହା ଆରମ୍ଭ ହୋଇଥାଏ, ତାହା ଜଡ଼ ଶକ୍ତି । ନାଭିକ ନିଉକ୍ଲିୟସର ଅନ୍ତରାଳରେ ଥିବା ଅଗଣିତ, ଅଦ୍‌ଭୁତ ଗତିବିଧି ଓ ଦିଗ ବିଦିଗ ରୂପେ ଏହାର ପରିଚୟ ମିଳିଥାଏ । ଏହାର ବିସ୍ତାର ହେଉଛି ଭୌତିକ ଜଗତ । ଇନ୍ଦ୍ରିୟ ଦ୍ୱାରା ଯାହାର ସ୍ୱରୂପ ଦେଖିହୁଏ, ବୁଝିହୁଏ ଓ ଇନ୍ଦ୍ରିୟାତୀତ ଯେଉଁ ଶକ୍ତିକୁ ଉପକରଣ ମାଧ୍ୟମରେ ଧରିହୁଏ, ସେ ସମସ୍ତ ଦୃଶ୍ୟ ତଥା ଅଦୃଶ୍ୟ ଶକ୍ତି ଏ ଆଲୋଡ଼ନରୁ ବଞ୍ଚିତ ନୁହନ୍ତି; କିନ୍ତୁ ସେଥିରେ ଚିନ୍ତନ କ୍ଷମତା ନ ଥିବାରୁ ତାହାକୁ ଜଡ଼ କୁହାଯାଇଥାଏ । ଜଡ଼ପ୍ରକୃତିର ଅର୍ଥ ଗତିହୀନ ନୁହେଁ । ଶକ୍ତିରେ ଗତି ନ ଥିଲେ ତାହା କି ଶକ୍ତି ? କଥିତଭାଷାରେ ତାହାକୁ ଜଡ଼, ଦାର୍ଶନିକ ଆଲୋଚନାରେ ତାହାକୁ ପରା ଓ ପୌରାଣିକ ଅଳଙ୍କାରରେ ତାହାକୁ ସାବିତ୍ରୀ କୁହାଯାଏ । ଏ ଜଗତରେ ଯାହା କିଛି ଦେଖିହୁଏ, ବୁଝିହୁଏ, ତାହାକୁ ସାବିତ୍ରୀ କହିବା ଯୁକ୍ତିଯୁକ୍ତ । ଯାହା କିଛି ବିଚାର, ଭାବନା ବା ଉତ୍ସାହର ଶକ୍ତି, ତାହାକୁ ଗାୟତ୍ରୀ କୁହାଯାଏ । ବ୍ରହ୍ମ ପରମେଶ୍ୱର ନିଜର ପରା ଓ ଅପରା ପ୍ରକୃତି ବା ଜଡ଼ ଏବଂ ଚେତନ ବିଭୂତି ମାଧ୍ୟମରେ ସମଗ୍ର ସୃଷ୍ଟିର ଉଦ୍‌ଭବ, ପୋଷଣ ଓ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ପୁରାଣୋକ୍ତ ଆଳଙ୍କାରିକ ଉପାଖ୍ୟାନ ଏହା ହିଁ ପ୍ରତିପାଦନ କରେ ।

ଏହି ପରା ଓ ଅପରା ପ୍ରକୃତିର ସଜୀବ ସମ୍ମିଶ୍ରଣ ହେଉଛି ମନୁଷ୍ୟ । ପଞ୍ଚତତ୍ତ୍ୱ ସମନ୍ୱୟରେ ଶରୀର ଗଠିତ ହୋଇଥିବାରୁ ତାହା ଜଡ଼ । ବିଚାରଶୀଳ ଏବଂ ଭାବସମ୍ପନ୍ନ ହୋଇଥିବାରୁ ଆତ୍ମା ଚେତନ ଅଟେ । ଜଡ଼ ଓ ଚେତନର ଏହି ସଂଯୋଗ ହିଁ ମନୁଷ୍ୟର ଅଦ୍ଭୁତ ପ୍ରତିଭାର ସ୍ରୋତ । ଯେଉଁ ନିମ୍ନଶ୍ରେଣୀର ଜୀବଜନ୍ତୁଙ୍କ ଚେତନା ଯେତେ ଦୁର୍ବଳ, ସେମାନେ ସେତିକି ଅନୁନ୍ନତ । କର୍ତ୍ତା

ଉତ୍କୃଷ୍ଟ ସ୍ତରର ପରା ଓ ଅପରା ପ୍ରକୃତିକୁ ଏହି କାୟାରେ ଉତ୍ତମ ରୂପେ ନିୟୋଜିତା କରିଛନ୍ତି । ସେହି କାରଣରୁ ଆମ୍ଭେମାନେ ଅଗଣିତ ସମ୍ପଦ ଓ ବିଭୂତିର ଅଧିପତି ହୋଇପାରନ୍ତୁ ।

କାୟାରେ ଏହି ଶକ୍ତିର ଦୁଇଟି କେନ୍ଦ୍ର ଅଛି । ଜଡ଼ ପରା ପ୍ରକୃତିର କେନ୍ଦ୍ର ହେଉଛି, ସାବିତ୍ରୀ । ମୂଳାଧାର ଚକ୍ରରେ କୁଣ୍ଡଳିନୀ ମହାଶକ୍ତି ଅତ୍ୟନ୍ତ ପ୍ରଚଣ୍ଡ ସ୍ତରର କ୍ଷମତା ଧାରଣ କରି ବସିଛି । ପୁରାଣରେ ଏହାକୁ ମହାକାଳୀ ନାମରେ ଅଭିହିତ କରାଯାଇଛି । ମୋଟାମୋଟି ଭାବରେ ଏହାକୁ କାମଶକ୍ତି କୁହାଯାଇପାରେ । କାମଶକ୍ତିର ଅନୁପଯୋଗ, ସଦୁପଯୋଗ ଓ ଦୁରୁପଯୋଗ କିପରି ମନୁଷ୍ୟର ବ୍ୟକ୍ତିତ୍ୱକୁ ପ୍ରଭାବିତ କରେ, ତାହାକୁ ଆଧ୍ୟାତ୍ମିକ କାମ ବିଜ୍ଞାନ କୁହାଯାଏ । ବୁଝି ବିଚାରି ଏ ଶକ୍ତିର ଉପଯୋଗ କରିବା ଆବଶ୍ୟକ । ଏହା ହିଁ ବ୍ରହ୍ମଚର୍ଯ୍ୟର ତତ୍ତ୍ୱଜ୍ଞାନ । ବିଦ୍ୟୁତ୍‌ଶକ୍ତି ସାହାଯ୍ୟରେ ଆମର ଅନେକ ଆବଶ୍ୟକତା ପୂରଣ ହୋଇଥାଏ । ଆମେ ତାହା ଦ୍ୱାରା ନାନାରୂପେ ଉପକୃତ ହୋଇଥାଉ । ଏହାର ଉପଯୁକ୍ତ ପ୍ରୟୋଗ ଦ୍ୱାରା ହିଁ ଏସବୁ ସମ୍ଭବ ହୋଇଥାଏ । ଅନ୍ୟଥା ଅସାବଧାନ ହୋଇଗଲେ ଏହି ବିଦ୍ୟୁତ୍ ଶକ୍ତି ପ୍ରାଣଘାତକ ହୋଇପଡ଼େ ।

କେତେ ଧନ ଅଛି, କେଉଁଠି ଅଛି ଇତ୍ୟାଦି ବିଷୟକୁ ଲୋକମାନେ ସାଧାରଣତଃ ଯେପରି ଗୋପନ ରଖିଥାନ୍ତି, ସେହିପରି କାମଶକ୍ତିକୁ ଗୋପନୀୟ ରଖାଯାଇଛି । ତାହାର ଅନାବଶ୍ୟକ ଆଲୋଚନା କଲେ ଅହିତ ହେବାର ଆଶଙ୍କା ଥାଏ । ତେଣୁ କାମତତ୍ତ୍ୱକୁ ଗୋପନୀୟ ଭାବରେ ରଖାଯାଇଛି । କିନ୍ତୁ ଏହାର ମହତ୍ତ୍ୱ, ସତ୍ତା ଓ ପବିତ୍ରତାକୁ କେହି କେବେ ଅସ୍ୱୀକାର କରିନପାରେ । ଏହା ଘୃଣ୍ୟ ନୁହେଁ, ପବିତ୍ରତମ ଅଟେ । ଏହା ହେୟ ନୁହେଁ, ଅଭିବନ୍ଦନୀୟ । ଭାରତୀୟ ଅଧ୍ୟାତ୍ମ ଶାସ୍ତ୍ର ଅନ୍ତର୍ଗତ ଶିବ ଓ ଶକ୍ତିର ପ୍ରତ୍ୟକ୍ଷ ସମନ୍ୱୟ ଯେଉଁ ପୂଜା ପ୍ରତୀକ ରୂପେ ପ୍ରସ୍ତୁତ କରାଯାଇଛି, ସେଥିରେ ସେହି ମହତ୍ତ୍ୱର ଉଦ୍‌ଘାଟନ କରାଯାଇଛି । ଶିବଙ୍କୁ ପୁରୁଷର ଜନନେନ୍ଦ୍ରିୟ ଓ ପାର୍ବତୀଙ୍କୁ ନାରୀର ଜନନେନ୍ଦ୍ରିୟ ରୂପ ଦିଆଯାଇଛି । ଏହାର ସମ୍ମିଳିତ ବିଗ୍ରହ ଆମ ଦେବ ମନ୍ଦିରରେ ସ୍ଥାପନ କରାଯାଇଥାଏ । ଏହା ଅଶ୍ଳୀଳ ନୁହେଁ । ତତ୍ତ୍ୱଦୃଷ୍ଟିରୁ ଏହା ସୃଷ୍ଟିରେ ସଂଚରଣ ଓ

ଉଲ୍ଲାସ କରୁଥିବା ପ୍ରାଣ ଓ ରୟି, ଅଗ୍ନି ଓ ସୋମର ସଂଯୋଗରେ ଉତ୍ପନ୍ନ ହେଉଥିବା ମହାନତମ ଶକ୍ତିପ୍ରବାହ ଦିଗରେ ସଂକେତ ଦେଇଥାଏ । ଏହି ତତ୍ତ୍ୱଜ୍ଞାନକୁ ବୁଝିବା ଅଶ୍ଳୀଳ କିମ୍ୱା ଘୃଣ୍ୟ ନୁହେଁ । ଏହା ବରଂ ଶକ୍ତିର ଉଦ୍‌ଭବ, ବିକାଶ ଓ ବିନିଯୋଗର ଉଚ୍ଚସ୍ତରୀୟ ବୈଜ୍ଞାନିକ ତଥ୍ୟ ଉପରେ ଆଧାରଭୂତ ଏକ ଦିବ୍ୟ ସଂକେତ ଅଟେ । ଏପରି ହୋଇ ନ ଥିଲେ, ଆମର ତ୍ରିକାଳଦର୍ଶୀ ଏବଂ ଈଶ୍ୱର ସମକକ୍ଷ ସ୍ତରରେ ଉପନୀତ ହୋଇଥିବା ଋଷିଗଣ ଭଗବାନ ଶିବ ଏବଂ ତାଙ୍କର ସ୍ଫୁରଣ ଶକ୍ତିର ସମନ୍ୱୟକୁ ମନ୍ଦିରରେ ସ୍ଥାପନ କରି ନ ଥାନ୍ତେ । ପ୍ରତ୍ୟେକ ବସ୍ତୁର ଦୁରୁପଯୋଗ ହିଁ ହେୟ । ଦୁରୁପଯୋଗ କଲେ ଅମୃତ ମଧ୍ୟ ବିଷରେ ପରିଣତ ହୋଇପାରେ । କାମଶକ୍ତି ନିଜେ ଘୃଣ୍ୟ ନୁହେଁ । ଯେଉଁ ବିଡ଼ମ୍ବନା ଦ୍ୱାରା ଶରୀରକୁ ଜର୍ଜର ଓ ମନକୁ ପତିତ କରିବା ଲାଗି ଅବିବେକ ଭାବରେ ଏହି ବହୁମୂଲ୍ୟ ଜ୍ୟୋତି ଧାରର ବ୍ୟବହାର କରାଯାଏ, ତାହା ଘୃଣ୍ୟ । ସାବିତ୍ରୀର, କୁଣ୍ଡଳିନୀ ଶକ୍ତିର ପ୍ରାଣ କାମ କିପରି ପତିତ ହୋଇପାରେ ? ଯାହା ଯେତିକି ଉତ୍କୃଷ୍ଟ, ବିକୃତ ହେବା ପରେ ତାହା ସେତିକି ନିକୃଷ୍ଟ ହୋଇଯାଏ । ଏହା ଏକ ତଥ୍ୟ । କାମ ତତ୍ତ୍ୱ କ୍ଷେତ୍ରରେ ମଧ୍ୟ ଏହି ସିଦ୍ଧାନ୍ତ ପ୍ରଯୁଜ୍ୟ । ଏହା ଯେତେବେଳେ ବିଦ୍ରୋହୀ ଏବଂ ଉଚ୍ଛୃଙ୍ଖଳ ହୋଇଉଠେ ଓ ଅବାଞ୍ଛନୀୟ ଚେଷ୍ଟା କରେ, ସେତେବେଳେ ହିଁ ଏହାର ଶମନର ପ୍ରୟୋଗ କରିବାକୁ ପଡ଼େ । ଭଗବାନ ଶିବ ତାଙ୍କର ତୃତୀୟ ନୟନ ଖୋଲି ତାହାର ଅପଚେଷ୍ଟାକୁ ଭସ୍ମ କରି ଦେଇଥିଲେ । ତାହାର ଅସ୍ତିତ୍ୱକୁ ଛାଡ଼ି ନ ଥିଲେ । ବରଂ ତାହାକୁ ବରଦାନ ଦେଇ ଅଜର ଅମର କରିଦେଲେ । ଯଦି ତାହା ଅନୁପଯୁକ୍ତ ହୋଇଥାନ୍ତା, ତେବେ ଶିବ ତ୍ରିପୁରାସୁର ପରି ତାହାକୁ ମଧ୍ୟ ସମୂଳେ ନଷ୍ଟ କରିଦେଇଥାନ୍ତେ । କିନ୍ତୁ ଏପରି ହୋଇ ନ ଥିଲା । ଏହା ହୋଇଥିଲେ, ତାହା ସଂସାରର ସର୍ବାପେକ୍ଷା ବଡ଼ ଦୁର୍ଘଟଣା ହୋଇଥାନ୍ତା । ପ୍ରାଣୀ ଦୁର୍ବଳ ଓ ଅବସାଦଗ୍ରସ୍ତ ହୋଇଥାନ୍ତା । ନୀରସ, ନିରାଶ ଓ ନିରୀହ ଜୀବନ ଯାପନକରି ସେ କୌଣସି ପ୍ରକାରେ ମୃତ୍ୟୁର ଦିନ ଗଣୁଥାନ୍ତା । ସଂସାରରେ ଆନନ୍ଦ, ଉଲ୍ଲାସ ଓ ଉତ୍ସାହ ପରି ଶକ୍ତି, ପ୍ରଗତି, ଶ୍ରୀସମୃଦ୍ଧି ଉତ୍ପନ୍ନ କରୁଥିବା କୌଣସି ପରିସ୍ଥିତି ଦେଖିବାକୁ ମିଳନ୍ତା ନାହିଁ ।

ବ୍ରହ୍ମାଙ୍କର ଦ୍ୱିତୀୟା ପତ୍ନୀ– ଶକ୍ତି ହେଉଛି ଗାୟତ୍ରୀ । ଏହାଙ୍କୁ ବିଚାର ବା ଭାବନା କୁହାଯାଇଥାଏ । ଏହା ନିଜ ସ୍ଥାନରେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହାଦ୍ୱାରା ମାନବୀୟ ଚିନ୍ତନର ଉଚିତ ମାର୍ଗଦର୍ଶନ ହୋଇଥାଏ । ଋତମ୍ଭରା ପ୍ରଜ୍ଞା ହିଁ ନରପଶୁକୁ ନର ନାରାୟଣରେ ରୂପାନ୍ତରିତ କରିଥାଏ । ସମସ୍ତ ଧର୍ମଶାସ୍ତ୍ର, ତତ୍ତ୍ୱଜ୍ଞାନ, ସ୍ୱାଧ୍ୟାୟ, ସତ୍‌ସଙ୍ଗ, ମନନ, ଚିନ୍ତନ, ଏହି କ୍ଷେତ୍ରର ପରିଧି ଅନ୍ତର୍ଭୁକ୍ତ । ଏହାର ଆଲୋକ ବିସ୍ତାର କ୍ଷେତ୍ରରେ କୌଣସି ପ୍ରତିବନ୍ଧକ ନଥିଲେ ଅତୀତରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ବହୁତ କିଛି କୁହାଯାଇପାରେ, ଶୁଣାଯାଇପାରେ । ଏହାର ଆଲୋଚନା ବରାବର କରାଯାଇଥାଏ । ସାବିତ୍ରୀର ଆଲୋଚନା ଅଧିକ କରାଯାଇ ନାହିଁ । କୁଣ୍ଡଳିନୀ ଶକ୍ତିର ଗୋପନୀୟତା ଉଦ୍‌ଘାଟନ କରିବାରେ ସଂକୋଚ କରିବାର ପରମ୍ପରା ରହିଛି । ଗୋପନୀୟତାର ମର୍ଯ୍ୟାଦା, ଯେପର୍ଯ୍ୟନ୍ତ ରକ୍ଷା କରାଯାଉଥିଲା, ସେପର୍ଯ୍ୟନ୍ତ ତାହାକୁ ତନ୍ତ୍ରବିଦ୍ୟା ମାଧ୍ୟମରେ କୌଣସି ନା କୌଣସି ରୂପରେ ଶିଖାଇ ଦିଆଯାଉଥିଲା । କିନ୍ତୁ ଦୁରୁପଯୋଗର ବିଗ୍ରହ ଉଗ୍ରରୁ ଉଗ୍ରତର ହେବାରେ ଲାଗିଲା ଏବଂ ଏହା ଅଶ୍ଳୀଳତାର ପର୍ଯ୍ୟାୟ ସ୍ପର୍ଶ କଲା । ଏହାକୁ ପ୍ରୟୋଗ କରୁଥିବା ଅସୁରମାନେ ଦୁଷ୍ଟଭାବ ପ୍ରଦର୍ଶନ କଲେ । ତେଣୁ ତାହାର ଆଲୋଚନା ଅଧିକ ଅସ୍ପୃଶ୍ୟ ହୋଇଗଲା । ଯେପର୍ଯ୍ୟନ୍ତ ତନ୍ତ୍ରକାଳ ଥିଲା, ସେପର୍ଯ୍ୟନ୍ତ ସ୍ନାୟୁମଣ୍ଡଳରେ ପ୍ରକମ୍ପିତ ଏହି ମହାକାଳୀଙ୍କର ବିବେଚନା ଓ ସାଧନା ସମ୍ମାନିତ ହେଉଥିଲା । ଦଶ ମହାବିଦ୍ୟାର ସାଧନା ଫଳରେ ଜୀବନରେ ଋଦ୍ଧିସିଦ୍ଧିର ଅଦ୍‌ଭୁତ ସଂଚରଣ ହୋଇଥାଏ । ଏହା ତନ୍ତ୍ର ବିଜ୍ଞାନର ଆଧାର ସ୍ତମ୍ଭ । ଏହି ଦଶଦେବୀଙ୍କ ପୂଜାପ୍ରକରଣ ଆମେ ନିଜର ତନ୍ତ୍ରବିଜ୍ଞାନ ପୁସ୍ତକରେ ଉଲ୍ଲେଖ କରିଛୁ । କିନ୍ତୁ ଗଭୀର କ୍ଷେତ୍ରରେ ପ୍ରବେଶ କଲେ ସ୍ପଷ୍ଟଭାବରେ ଜଣାପଡ଼େ ଯେ ପ୍ରକୃତ ଅବସ୍ଥା କେବଳ ପୂଜା ଉପାସନା ଭିତରେ ସୀମାବଦ୍ଧ ନୁହେଁ । ଏହାକୁ ଜୀବନର ଜ୍ୟୋତିର୍ମୟୀ ଶକ୍ତିପୀଠ କୁହାଯାଇପାରେ । ଦଶ ବିଦ୍ୟା କେବଳ ପୂଜା, ସାଧନାରେ ପ୍ରଯୁକ୍ତ ହେଉଥିବା ଦେବୀ ନୁହନ୍ତି । ବରଂ ସେମାନେ ମାନବୀୟ ଚେତନାର ସମଗ୍ର କ୍ରିୟା ପ୍ରକ୍ରିୟାରେ ବ୍ୟାପ୍ତ ଶକ୍ତି ନିର୍ଝରିଣୀ ଅଟନ୍ତି । ଏଥିରେ ସ୍ନାନ କଲେ ମନୁଷ୍ୟ ସାଧାରଣ ନ ରହି

ଅସାଧାରଣ ହୋଇଯାଏ ଓ ତୁଚ୍ଛତାର କଳେବର ତ୍ୟାଗ କରି ମହାନତାର ଭୂମିକାରେ ପ୍ରବେଶ କରିଥାଏ ।

କାମବିଦ୍ୟା ଭଳି ତତ୍ତ୍ୱଜ୍ଞାନର ସଂଯତ ଓ ବିଜ୍ଞାନସମ୍ମତ ପ୍ରତିପାଦନ ପାଇଁ ପଦକ୍ଷେପ ନେବାର ସମୟ ଆସିଯାଇଛି । ଏହି ମହାନ୍ ବିଦ୍ୟାର ଆଲୋଚନା ସବୁସ୍ତରରେ ଅଶ୍ଳୀଳ ବୋଲି ମନେ କରାଯିବା, ତାହାକୁ ସର୍ବଥା ଗୋପନ କରି ରଖାଯିବା– ଏପରି ସଂକୋଚଯୁକ୍ତ ପରଦାକୁ ଦୂର କରାଯିବା ଉଚିତ । ଏହି ସଂକୋଚ ମାନବ ଜାତିକୁ ଏକ ମହାନ୍ ଉପଲବ୍ଧିରୁ ବଞ୍ଚିତ କରି ରଖିବ । ଆଲୋଚନା କରୁଥିବା ଲୋକମାନଙ୍କୁ ଯଦି ଅନ୍ୟମାନେ ନୀଚ ଶ୍ରେଣୀର ବୋଲି ବୁଝିବେ, ତେବେ ଏହାର ଗରିମା ଖର୍ବ ହୋଇଯିବ । ଏହା ଏକ ଅପରାଧ । ଶରୀର ରଚନା ଶିକ୍ଷା ଦେଉଥିବା ଅଧ୍ୟାପକମାନେ ଜନନେନ୍ଦ୍ରିୟର ସ୍ୱରୂପ ବୁଝାଇବାରେ ସଂକୋଚ କରି ନିଜର ଛାତ୍ରମାନଙ୍କୁ ସେ ମହତ୍ତ୍ୱପୂର୍ଣ୍ଣ ଜ୍ଞାନରୁ ବଞ୍ଚିତ କରି ନଥାନ୍ତି । ଏହି ସଂକୋଚ ଦୂର କରାଯାଇ ନ ଥିଲେ ଯୌନ ରୋଗର ଚିକିତ୍ସକ ଆସନ୍ତେ କେଉଁଠାରୁ ? ପ୍ରସବ କ୍ରିୟାରେ ସାହାଯ୍ୟ ଓ ଗର୍ଭାଶୟର ଶଲ୍ୟ ଚିକିତ୍ସା କିପରି ସମ୍ଭବ ହୋଇଥାନ୍ତା ? ଯେଉଁଠାରୁ କୁତ୍ସାରଟନା ହେବାର ଆଶଙ୍କା ଥାଏ, ସେଠାରେ ହିଁ ସଂକୋଚ ଯୁକ୍ତିଯୁକ୍ତ । ପଶୁତାକୁ ଉତ୍ସାହିତ କରୁଥିବା ଅଶ୍ଳୀଳତା, କାମୁକତା ବାସନାର ଆତ୍ମଘାତୀ ପ୍ରବୃତ୍ତି ଉପରେ ପ୍ରତିବନ୍ଧକ ପ୍ରୟୋଗ କରାଯିବା ଉଚିତ । ସୃଷ୍ଟିର ସଂଚରଣ ପ୍ରକ୍ରିୟା ଓ ମାନବ ଜୀବନର ଅତିଶୟ ମହତ୍ତ୍ୱପୂର୍ଣ୍ଣ ଏବଂ ପ୍ରେରକ ପ୍ରବୃତ୍ତିର ଦିଗବିଦିଗ ବିଷୟକ ଜ୍ଞାନରୁ ବଞ୍ଚିତ ହୋଇ ରହିବା ବସ୍ତୁତଃ ନିଜ ଗୋଡ଼କୁ ନିଜେ କାଟିବା ସହିତ ସମାନ । ଉଚିତ ଜ୍ଞାନର ଅଭାବରେ ହିଁ ପ୍ରକ୍ଷିପ୍ତ ଜ୍ଞାନର ବିସ୍ତାର ପାଇଁ ସୁଯୋଗ ମିଳେ । କାମ ବାସନା ମନୁଷ୍ୟ ଜୀବନର ଏକ ପ୍ରବଳ ପ୍ରବୃତ୍ତି ଅଟେ । ତାହାର କ୍ରିୟାକଳାପ ମସ୍ତିଷ୍କକୁ ଉଦ୍‌ବେଳିତ କରିଥାଏ । ଫଳତଃ ବ୍ୟକ୍ତି ସେ ବିଷୟରେ କିଛି ନା କିଛି କହିବା, ଶୁଣିବା ପାଇଁ, ପଚାରିବା ପାଇଁ, ପଢ଼ିବା ଜାଣିବା ପାଇଁ ଆଗ୍ରହ ପ୍ରକାଶ କରିଥାଏ । ଉଚ୍ଚସ୍ତରର ଜ୍ଞାନ ନ ଥିବାରୁ ତା ହାତକୁ ଆସେ ଅତି ବିକୃତ ଓ ଅବାଞ୍ଛନୀୟ ଜିନିଷ । ଏହାଫଳରେ ଆତ୍ମହତ୍ୟା କରିବାର ପଥ ହିଁ ପ୍ରଶସ୍ତ ହୋଇଯାଏ । ଏ

ଅବସ୍ଥାରୁ ରକ୍ଷା ପାଇବା ଦୃଷ୍ଟିରୁ କାମ ପ୍ରବୃତ୍ତିର ତଥ୍ୟପୂର୍ଣ୍ଣ ଜ୍ଞାନ ସର୍ବସାଧାରଣଙ୍କ ନିମନ୍ତେ ଉପଲବ୍ଧ ହେବା ଏବଂ ସେହି ଆଧାର ଉପରେ ତାହାର ବ୍ୟକ୍ତିତ୍ୱ ବିକାଶ ଓ ଶକ୍ତି ବ୍ୟବସ୍ଥାରେ ସାହାଯ୍ୟ ମିଳିବା ଆବଶ୍ୟକ । ପ୍ରକୃତି ଓ ପୁରୁଷର ସାମୀପ୍ୟ ଏବଂ ଏକତାକୁ ତାତ୍ତ୍ୱିକ ଦୃଷ୍ଟିରେ ଦେଖିବା ଆବଶ୍ୟକ ଏବଂ ଗୋଟିଏ ଶରୀରରେ ରହୁଥିବା ଏହି ଦୁଇ ତତ୍ତ୍ୱ ସହଜ ଭାବରେ ଥିବା ଭଳି ତାହାର ସମନ୍ୱୟ କରିବା ଉଚିତ । ଆଜିର ପରିସ୍ଥିତିରେ ଆଧ୍ୟାତ୍ମିକ କାମ ବିଜ୍ଞାନକୁ ପ୍ରଥମ ପାଠ ରୂପେ ଭାରତୀୟମାନଙ୍କୁ ପଢ଼ାଇବା ଆବଶ୍ୟକ । ମସ୍ତିଷ୍କ ପ୍ରାଣର, ଅଗ୍ନିର, ବ୍ରହ୍ମର ପ୍ରତୀକ । ମୂଳାଧାର କାମ ସଂସ୍ଥାନ, ରୟି, ସୋମ, ପ୍ରକୃତିର ପ୍ରତୀକ । ଉଭୟ ଗୋଟିଏ ଶରୀରରେ ମିଳିମିଶି ପାଖେ ପାଖେ ରହିଥାନ୍ତି । ଉଭୟଙ୍କର ଏକତ୍ର ଅବସ୍ଥାନ କୌଣସି ଉପଦ୍ରବ ସୃଷ୍ଟି କରିନଥାଏ । ବରଂ ଅପୂର୍ଣ୍ଣତାକୁ ପୂର୍ଣ୍ଣତାରେ ପରିଣତ କରେ । ଦୁଇ ପୃଥକ ଅଙ୍ଗ ଏକ ସୀମା ଭିତରେ ବିକଶିତ ହୋଇ ସେହି ପ୍ରକ୍ରିୟା ମାଧ୍ୟମରେ ଏକରୁ ଦୁଇ ଓ ଦୁଇରୁ ଅନେକରେ ପରିଣତ ହୋଇଥାନ୍ତି । ନର ଓ ନାରୀ ଉଭୟ ମନୁଷ୍ୟ । ଉଭୟଙ୍କ ଅସ୍ତିତ୍ୱରେ ପ୍ରତ୍ୟକ୍ଷରୂପେ କୌଣସି ବଡ଼ ପାର୍ଥକ୍ୟ ନାହିଁ । ଉଭୟଙ୍କର ଯୋଗ୍ୟତା, ମର୍ଯ୍ୟାଦା ଓ କ୍ଷମତା ପ୍ରାୟ ଏକାଭଳି ମନେ କରାଯାଇପାରେ । ସୂକ୍ଷ୍ମ ଦୃଷ୍ଟିରେ ଗଭୀର ଅଧ୍ୟୟନ କଲେ ଜଣାପଡ଼େ ଯେ ନର ଯେଉଁଠି ପ୍ରାଣ, ପୌରୁଷ ଓ ଅଗ୍ନିର ବାହୁଲ୍ୟ ରଖେ, ନାରୀ ସେଠାରେ ସୋମ, ସୌଜନ୍ୟ ଓ ଭାବନାର ପ୍ରତିନିଧିତ୍ୱ କରେ । ଉଭୟ କ୍ଷେତ୍ରରେ ସେମାନେ ନିଜର ବିଶେଷତ୍ୱ ପ୍ରତିପାଦନ କରିଥାନ୍ତି । ସେମାନଙ୍କ ମହତ୍ତ୍ୱ ସମାନ ଭାବରେ ମୂଲ୍ୟବାନ । ଉଭୟ ପରସ୍ପରର ପୂରକ । ସାମୀପ୍ୟ ଯୋଗୁ ସେମାନେ ପରସ୍ପରକୁ ଅନେକ କିଛି ଦେଇଥାନ୍ତି ଓ ଦେଇପାରନ୍ତି । ତେଣୁ ସେମାନେ ପରସ୍ପର ମଧ୍ୟରେ ଅସ୍ପୃଶ୍ୟ ପରି ନ ରହିବା ଉଚିତ । ଆଗକାଳରେ ସାମନ୍ତବାଦୀ ଯୁଗରେ ନାରୀକୁ ଅତ୍ୟନ୍ତ ଦୁଃଖଦ ଓ ଦୁର୍ଭାଗ୍ୟପୂର୍ଣ୍ଣ ଭାବରେ ଚିତ୍ରଣ କରାଯାଇଛି । ସ୍ୱର୍ଗର ଦେବୀ ସ୍ଥାନରୁ ତାକୁ ଟାଣି ଆଣି ବେଶ୍ୟା ପରି ଏକ ନାରକୀୟ ସ୍ତରରେ ଚିତ୍ରଣ କରାଯାଇଛି । ତାହାକୁ କେବଳ କାମିନୀ ଓ ରମଣୀ ରୂପେ ରଖାଯାଇଛି । କଳା ନାମରେ ନାରୀକୁ

କେବଳ ଘୃଣ୍ୟ ବାସନାର ପ୍ରତିମୂର୍ତ୍ତି ରୂପେ ସଜାଇ ଦିଆଯାଇଛି । ଗୀତ, କାବ୍ୟ,ଚିତ୍ର, ମୂର୍ତ୍ତି, ଅଭିନୟ, ନୃତ୍ୟ, ସାହିତ୍ୟ ଇତ୍ୟାଦି କଳାର ଯେତେ ବିଭାଗ ଅଛି, ସବୁ ସମ୍ମିଳିତ ସ୍ୱରରେ ନାରୀକୁ ଯୌନ ଲିପ୍‌ସାର ତୋଷଣରେ ପ୍ରଯୁକ୍ତ ହେଉଥିବା ଉପଭୋଗର ସାମଗ୍ରୀ ରୂପେ ପ୍ରତିପାଦନ କରିଛନ୍ତି । ମସ୍ତିଷ୍କ ସେହି ଛାଞ୍ଚରେ ଗଢ଼ି ହୋଇଗଲା । ବାସନାର ଉତ୍ତେଜନାକୁ ଲକ୍ଷ୍ୟ କରି ତାକୁ ତଦନୁରୂପ ବେଶଭୂଷାରେ ଅଭ୍ୟସ୍ତ କରାଇ ଦିଆଗଲା । ଆଜି ନାରୀକୁ ଯେଉଁ କୁରୁଚିପୂର୍ଣ୍ଣ ସାଜସଜ୍ଜାରେ ସର୍ବତ୍ର ଦେଖାଯାଉଛି, ତାହାର ପୃଷ୍ଠଭୂମିରେ ସାମନ୍ତବାଦୀ ଯୁଗରେ ପ୍ରଚଳିତ ଦୁରଭିସନ୍ଧି କାମ କରୁଛି । ନାରୀ ନରର ବାସନାକୁ ଉତ୍ତେଜିତ କରୁଥିବା ସାଜସଜ୍ଜାକୁ ସ୍ୱୀକାର କରିନେଇଛି । ଏହା ନାରୀ ପକ୍ଷରେ ଅତି ଅପମାନର କଥା । ଦିନ ଆସିବ, ଯେତେବେଳେ ସେ ତା ଉପରେ ଚଢ଼ାଇ ଦିଆଯାଇଥିବା ଏହି ଆବରଣକୁ କାଢ଼ି ଦୂରକୁ ଫିଙ୍ଗି ଦେବ । ଏହା ବିରୁଦ୍ଧରେ ସେ ବିଦ୍ରୋହ କରିବ । ନର ତଥା ନାରୀର ସମାନ ବେଶଭୂଷା ଓ ସାଜସଜ୍ଜାର ପ୍ରଚଳନ ହେବ । ନାରୀକୁ ପ୍ରଲୁବ୍‌ଧ କରିବା ଦୃଷ୍ଟିରୁ ନର ଯଦି ସାଜସଜ୍ଜା ବା ଶୃଙ୍ଗାରର ଜିନିଷ ବ୍ୟବହାର କରେ ନାହିଁ, ତେବେ ନାରୀ ଉତ୍ତେଜକ ସାଜ ସଜ୍ଜା ନେଇ କାହିଁକି ନିଜ ହୀନତାର ପରିଚୟ ଦେବ ? ଭୋଗ୍ୟା ହେବାର ପ୍ରଦର୍ଶନକୁ ସେ ନିଜ ବ୍ୟକ୍ତିତ୍ୱର ଅପମାନ ବୋଲି ମନେ କରିବ ନାହିଁ କାହିଁକି ? ଦିନେ ନା ଦିନେ ତା ମନରେ ଏଇ ଭାବନା ଜାଗ୍ରତ ହେବ । ନର ନିଜେ ତାହା ହୃଦୟଙ୍ଗମ କରି ପାରିବ କିମ୍ବା ନାରୀକୁ ହେୟ, ହୀନ, ଘୃଣିତା, ଭୋଗ୍ୟା, ରମଣୀ, କାମିନୀ ପରି ଲାଞ୍ଛନା ଦେଇ ତିରସ୍କୃତ କରୁଥିବା ଦୁରଭିସନ୍ଧିକୁ କଳା ନାମରେ ସୃଷ୍ଟି ହୋଇଥିବା ବୁଢ଼ିଆଣୀର ଜାଲକୁ ଜାଗୃତା ନାରୀ ଛିଣ୍ଡାଇ ଫିଙ୍ଗି ଦେବ ।

ନାରୀର ସ୍ୱାଭାବିକ ସ୍ଥାନ ତାକୁ ମିଳିବା ଉଚିତ । ସମାଜରେ ସେ ପୁରୁଷର ପରିପୂରକ ଭାବରେ ରହିବା ଆବଶ୍ୟକ । ବର୍ତ୍ତମାନ ଅସ୍ପୃଶ୍ୟ ପରି ନାରୀର ଅବସ୍ଥା ହୋଇଛି । ରୁଗ୍‌ଣ ମନୋବୃତ୍ତି ହିଁ ଏହାର ଏକମାତ୍ର କାରଣ । ତଦନୁସାରେ କେବଳ କାମସେବନ ପାଇଁ ନାରୀର ଅସ୍ତିତ୍ୱ ରହିଛି ବୋଲି ମନେ କରାଯାଉଛି । ତାକୁ ଯଦି ଭଉଣୀ, କନ୍ୟା, ମାତା, ସଖୀ ଓ ପୂରକ ବୋଲି ମନେ କରାଯାଆନ୍ତା,

ତେବେ ଯେମିତି ଦୁଇ ପୁରୁଷଙ୍କ ସାନ୍ନିଧ ହେତୁ କାମ ପ୍ରବୃତ୍ତି ଉତ୍ତେଜିତ ହେବାର କୌଣସି ଭୟ ନ ଥାଏ, ସେମିତି ନର ଓ ନାରୀ ମଧ୍ୟରେ ଅକାରଣ କଳୁଷ ଉତ୍ପନ୍ନ ହେବ ନାହିଁ । ବାସନା ଓ ବିକାର ପାଇଁ ନର କିମ୍ବା ନାରୀର ଅସ୍ତିତ୍ୱ ଦୋଷୀ ନୁହେଁ । ଅବାଞ୍ଛନୀୟ ତତ୍ତ୍ୱରେ ଥିବା ଭ୍ରମ ଜଞ୍ଜାଳ ରୂପେ କାଗଜର ରାବଣ ଗଢ଼ିଥିବା ମନୋବୃତ୍ତି ହିଁ ଏଥିପାଇଁ ଦାୟୀ ଅଟେ ।

ଆଜି ଆମ ସମାଜରେ ନାରୀକୁ ନରଠାରୁ ସର୍ବଦା ଦୂରରେ ରଖାଯାଉଛି । ଯଦି କେବେ ଉଭୟଙ୍କର ଭେଟ ହୋଇଗଲା, ସେମାନେ କଥାବାର୍ତ୍ତା ହେଲେ ବା ହସିଲେ, ତେବେ ସେ ପ୍ରସଙ୍ଗ ଯେତେ ପବିତ୍ର ହୋଇଥିଲେ ସୁଦ୍ଧା ତାହାକୁ ବ୍ୟଭିଚାର ମନେ କରାଯାଉଛି । ଏହା ଆମର ତୁଚ୍ଛଭାବର ଘୃଣ୍ୟତମ ସ୍ୱରୂପ । ହେୟ ପ୍ରୟୋଜନ ବିନା ନାରୀ ନର ସହିତ କଥାବାର୍ତ୍ତା କରିବ ନାହିଁ, ତା ମନରେ କୁତ୍ସା ବ୍ୟତୀତ ଅନ୍ୟ କିଛି ନ ଥାଏ । ଏହା ମନେ କରି ପରଦା ପ୍ରଥା ପରି ଏକ କଠୋର କଟକଣା ପ୍ରଚଳନ କରିବା ସୁନିଶ୍ଚିତ ରୂପେ ଅତି ଘୃଣ୍ୟ ଓ ନୀଚ ମନୋବୃତ୍ତିର ପରିଚୟ ଦେଇଥାଏ । ଆମେ ଏଇ ଦୁର୍ବୁଦ୍ଧିର ଜାଲରେ ଛନ୍ଦି ହୋଇ ପଡ଼ିଛୁ । ଭାରତୀୟ ସମାଜରେ ଆଜି ପର୍ଯ୍ୟନ୍ତ ପରଦା ପ୍ରଥା ରହିବା ଆମ ଅନୁନ୍ନତ ଚରିତ୍ରର ପରିଚାୟକ । ଏଥିରେ ତିଳ ପ୍ରମାଣ ଲାଭ ନାହିଁ, ବରଂ ଅପାର କ୍ଷତି ହେଉଛି । ନାରୀମନରେ ହୀନ ଭାବନା ଘର କରିଛି, ତା'ର ସାହସ ତୁଟି ଯାଇଛି, ସେ ପରାବଲମ୍ବୀ ହୋଇପଡ଼ିଛି, ସେ ପ୍ରଗତି ଦିଗରେ ଅଗ୍ରସର ହେବା ପାଇଁ ସାହସ ସଂଚୟ କରିପାରୁ ନାହିଁ । ସ୍ୱାବଲମ୍ବନ ବିଷୟ ଚିନ୍ତା କରିବା ପାଇଁ ସେ ଭୟ କରୁଛି । ଏହି ଅବସ୍ଥା ଯୋଗୁଁ ତା'ର ବ୍ୟକ୍ତିତ୍ୱ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଛି ଏବଂ ସେ ପଦେ ପଦେ ପଦଦଳିତ ହେଉଛି । ଉଚ୍ଚବର୍ଣ୍ଣର କନ୍ୟାର ବିବାହ ମୋଟାଧରଣର ଯୌତୁକ ଦେଲେ ବିବାହ ହୋଇଥାଏ । ବିନା ମୂଲ୍ୟରେ ଏକ ନାରୀ ପାଇବା ନରର ଅସାଧାରଣ ସୌଭାଗ୍ୟ ଅଟେ । ଏହି ସୌଭାଗ୍ୟର କୌଣସି ମୂଲ୍ୟାଙ୍କନ ନ କରିବା ଏବଂ ତାହାକୁ ଅତି ତୁଚ୍ଛ ମନେ କରି କେବଳ ଯୌତୁକ ମିଳିଲେ ତାହାକୁ ସ୍ୱୀକାର କରିବା ନାରୀର ଦୟନୀୟ ଓ ହୃଦୟବିଦାରକ ଦୁର୍ଦଶାର ଦୁର୍ଭାଗ୍ୟପୂର୍ଣ୍ଣ ଚିତ୍ର

ଅଟେ । ଯେଉଁ ମନୋବୃତ୍ତି ନାରୀକୁ ଭୋଗ୍ୟା ମନେ କରେ ଏବଂ ଅନ୍ୟାନ୍ୟ ଉପଭୋଗର ସାମଗ୍ରୀ ପରି ତାକୁ ସଂଗ୍ରହ କରିବା ଦୃଷ୍ଟିରୁ ପ୍ରତିବନ୍ଧ ଆରୋପ କରେ, ସେହି ମନୋବୃତ୍ତି ହିଁ ଏଥିପାଇଁ ଦୋଷୀ । ଏ ବନ୍ଧନ ନାରୀକୁ ଏତେ ଦୁର୍ବଳ କରିଦେଇଛି ଯେ ସେ ସମାଜ ପାଇଁ, ପରିବାର ପାଇଁ ଓ ନିଜ ପାଇଁ ଏକ ଭାର ହୋଇ ରହିଛି ।

ଏ ପରିସ୍ଥିତିର ଅନ୍ତ ହେବା ଆବଶ୍ୟକ । ନାରୀ ଭୋଗ୍ୟା ନୁହେଁ, ରମଣୀ କିମ୍ବା କାମିନୀ ନୁହେଁ– ଏକଥା ସର୍ବସାଧାରଣଙ୍କୁ ବୁଝାଇଦେବା ଉଚିତ । ସେ ମନୁଷ୍ୟ ଏବଂ ଅଗଣିତ ବିଭୂତିର ଅଧିକାରିଣୀ । ସେ ନରର ପରିପୂରକ । ଉଭୟ ମିଳିମିଶି ସହଯୋଗୀ, ସହଚର ପରି ରହିଲେ, ତାହା ସ୍ୱାଭାବିକ, ଉଚିତ ଓ ନ୍ୟାୟସଙ୍ଗତ ହେବ । କଟକଣା ରଖି ଯେଉଁ ବ୍ୟଭିଚାର ନିୟନ୍ତ୍ରଣ ବିଷୟ ଚିନ୍ତା କରାଯାଉଛି ତାହା ସର୍ବଥା ନିରର୍ଥକ । ବ୍ୟଭିଚାର କେବଳ କ୍ରିୟା ନୁହେଁ । ତାହା ଏକ ଦୂଷିତ ଦୃଷ୍ଟି ଏବଂ ସେଥିରେ ଦୃଷ୍ଟିଦୋଷ ପରିପୂର୍ଣ୍ଣ ହୋଇ ରହିଛି । ଦୃଷ୍ଟିଦୋଷ ଥିଲେ ଅବିବାହିତ ମଧ ଦଣ୍ଡଭୋଗ କରିବାର ଯୋଗ୍ୟ । ଯାହାର ଭାବନା ପବିତ୍ର, ସେ ବିବାହିତ ହୋଇ ମଧ ବ୍ରହ୍ମଚାରୀ । ଏହି ପ୍ରବୃତ୍ତିର ବିକାଶ ଅତ୍ୟନ୍ତ ଜରୁରୀ । ରମଣୀ ଓ କାମିନୀ ପରି ଭାଷା ଭୁଲିଯିବାକୁ ହେବ । କଳା ନାମରେ ଯେଉଁ ଦୁଷ୍ଟ ଦୁରାତ୍ମାମାନେ ନାରୀକୁ ବେଶ୍ୟାର ସ୍ଥାନ ଦେବା ପାଇଁ ଯୋଜନା କରୁଛନ୍ତି, ସେମାନଙ୍କୁ ଅପରାଧୀ ଶ୍ରେଣୀରେ ଅନ୍ତର୍ଭୁକ୍ତ କରିବା ଉଚିତ । ନର ପରି ନାରୀ ମଧ ମନୁଷ୍ୟ । ମନୁଷ୍ୟ ପରସ୍ପର ମଧରେ ସହଯୋଗ, ସଂପର୍କ ରକ୍ଷା କରିବା ଲାଗି ମୁକ୍ତି ହେବା ଦରକାର । ଏହା ମାନସିକ ଓ ସାମାଜିକ ନ୍ୟାୟର ଦାବି ଏବଂ ଅଧିକ ଦିନ ପର୍ଯ୍ୟନ୍ତ ଅତି ନିର୍ଦୟ ଭାବରେ ଏ ଦାବିକୁ ଚାପି ରଖାଯାଇ ନ ପାରେ । ପରସ୍ପରର ପୂରକ ଭାବରେ ରହି ସହଯୋଗ ଓ ସଦ୍‌ଭାବର, ପ୍ରେମ ଓ ସୌଜନ୍ୟର ଭାବନା ବିକାଶ କରି ହିଁ ଆମେ ବାଞ୍ଛନୀୟ ଓ ସ୍ୱାଭାବିକ ସ୍ଥିତିର ସମାଜ ଗଠନ କରିପାରିବୁ । ଆଧାତ୍ମିକ ଦୃଷ୍ଟିରୁ ଏହା ଅତ୍ୟନ୍ତ ଆବଶ୍ୟକ । ପ୍ରାଣ ଓ ରୟିର ସାମୀପ୍ୟ ବିନା ଆନ୍ତରିକ ଉଲ୍ଲାସର ଉଦ୍‌ଭବ ଅସମ୍ଭବ । ପତ୍ନୀ ବିନା ସରସତା, ଭଗ୍ନୀ ବିନା ସୌହାର୍ଦ୍ୟ, କନ୍ୟା

ବିନା ସ୍ନେହର ଧାରା ଶୁଷ୍କ ହୋଇଯିବ । ନାରୀକୁ ଅସ୍ପୃଶ୍ୟା ମନେ କରୁଥିବା ନର ମାଶାଣିରେ ବାସ କରୁଥିବା ପ୍ରେତ ପିଶାଚ ସମାନ ଏକାକୀ ରହି ଜଳୁଥିବ । ଠିକ୍ ସେମିତି କଟକଣାରେ ରହୁଥିବା ନାରୀ ମଣୀହୀନ ସର୍ପ ପରି ବାଟବଣା, ଅଶାନ୍ତ, ଉଦ୍‌ବିଗ୍ନ ଓ ଅବିକଶିତ ଅବସ୍ଥାରେ ରହିଯିବ । ଯେଉଁ ଗର୍ହିତ କାମ ବିଜ୍ଞାନ ଏହି ଅବାଞ୍ଛନୀୟ ଅବସ୍ଥାକୁ ସୃଷ୍ଟି କରିଛି, ତାହାକୁ ବହିଷ୍କାର, ପରିଷ୍କାର କରିବାକୁ ହେବ । ଏପରି ହେଲେ, ବ୍ରହ୍ମ ଓ ପ୍ରକୃତିର ସାନ୍ନିଧ ପରି ନର ଓ ନାରୀ ମଧ୍ୟରେ ସ୍ନେହ, ସଦ୍ଭାବ ବୃଦ୍ଧି ପାଇଲେ ସୃଷ୍ଟିର ତଥା ମାନବ ସମାଜର ସୌନ୍ଦର୍ଯ୍ୟ ବୃଦ୍ଧି ପାଇବ, ହ୍ରାସ ହେବ ନାହିଁ ।

ଯୌନ ସଂପର୍କ ଏକ ବିଶେଷ ପ୍ରକ୍ରିୟା ଅଟେ । ଏହା ପଛରେ ଅଗ୍ନି ଓ ସୋମର ମିଳନରୁ ଉତ୍ପନ୍ନ ଏକ ବିଦ୍ୟୁତ୍ ସଂଚାରର ବିଶେଷ ପ୍ରକ୍ରିୟା ସନ୍ନିହିତ । ତେଣୁ ତାହାର ଔଚିତ୍ୟ ଓ ପବିତ୍ରତା ଉପରେ ସମୁଚିତ ଦୃଷ୍ଟି ଦିଆଯିବା ଉଚିତ । ଅନାବଶ୍ୟକ କଟକଣା ଥିଲେ ଏ ପ୍ରୟୋଜନ ପୂରଣ ହୋଇ ନ ପାରେ । ବର୍ତ୍ତମାନ କଟକଣାର ଅବାଞ୍ଛନୀୟତାକୁ ହୃଦୟଙ୍ଗମ କରାଯିବା ଦରକାର । ନର ଓ ନାରୀ ସ୍ୱେଚ୍ଛାରେ ସଦ୍‌ଭାବର ମହତ୍ତ୍ୱ ସ୍ୱୀକାର କରନ୍ତୁ । ଅଧିକ ପବିତ୍ରତା ସହିତ, ସହଯୋଗ ଓ ସୌଜନ୍ୟ ସହକାରେ ରହନ୍ତୁ । ଏକ ଅପରର ପରିପୂରକ ହୋଇ ପ୍ରଗତି ପଥରେ ସାହସର ସହିତ ଆଗେଇ ଚାଲନ୍ତୁ । ଏହାକୁ ଦୃଷ୍ଟିରେ ରଖି ସବୁ କଟକଣାକୁ ଶିଥିଳ ଓ ସମାପ୍ତ କରିଦେବା ଏକାନ୍ତ ଆବଶ୍ୟକ ।

## ନାରୀକୁ କାମିନୀ ଓ ରମଣୀରେ ପରିଣତ କରାନଯାଉ

ଦୁଇଟି ଚକ ନ ଥିଲେ ଗାଡ଼ି ଚାଲିପାରେ ନାହିଁ । ନର ଓ ନାରୀ ମଧ୍ୟରେ ଘନିଷ୍ଠ ସହଯୋଗ ବିନା ସୃଷ୍ଟିର ବ୍ୟବସ୍ଥାକ୍ରମ ଚାଲି ନ ପାରେ । ଉଭୟଙ୍କର ମିଳନ କାମତୃପ୍ତି ଓ ପ୍ରଜନନ ପରି ପଶୁ ପ୍ରୟୋଜନ ପାଇଁ ଉଦ୍ଦିଷ୍ଟ ନୁହେଁ । ବରଂ ଘରକରଣା ଠାରୁ ଆରମ୍ଭ କରି ବ୍ୟକ୍ତିତ୍ୱର ବିକାଶ ଏବଂ ସାମାଜିକ ପ୍ରଗତି ପର୍ଯ୍ୟନ୍ତ ସତ୍ ପ୍ରବୃତ୍ତିର ଛାଞ୍ଚ ଗଢ଼ିବା ଉଭୟଙ୍କ ସହଯୋଗ ଫଳରେ ହିଁ ସମ୍ଭବ ହୋଇପାରେ । ଏହି ଘନିଷ୍ଠତା ଯେତେ ପ୍ରଗାଢ଼ ହେବ, ବିକାଶ ଓ ଉଲ୍ଲାସର ପ୍ରକ୍ରିୟା ସେତିକି ସଘନ ହୋଇପାରିବ ।

କିଛି ଦିନ ଧରି ନର ଓ ନାରୀର ସାନ୍ନିଧ୍ୟର ପ୍ରଶ୍ନକୁ ଅତିବାଦର ଦୁଇ ଅନ୍ତିମ ଭାଗ ସହିତ ସଂଯୁକ୍ତ କରାଯାଇଛି । ଏକ ଦିଗରେ ନାରୀକୁ ଅତ୍ୟନ୍ତ ଆକର୍ଷଣୀୟ ଭାବରେ ଚିତ୍ରଣ କରାଯାଇଛି । ତା'ର ମାଂସଳ ଅବୟବକୁ ହିଁ ସୃଷ୍ଟିର ସର୍ବଶ୍ରେଷ୍ଠ ବିଭୂତି ରୂପେ ପ୍ରମାଣ କରାଯାଇଛି । ନାରୀର ଢ଼ଉଳ ଢାଉଳ ଅଙ୍ଗ ପ୍ରତ୍ୟଙ୍ଗକୁ କଳା ଅକୁଣ୍ଠ ପ୍ରଶଂସା କରିଛି । ଏହି ସୌନ୍ଦର୍ଯ୍ୟକୁ କାମତୃପ୍ତି ଉଦ୍ଦେଶ୍ୟରେ ଲାଭ କରିବା ଜୀବନର ସର୍ବଶ୍ରେଷ୍ଠ ଉପଲବ୍ଧି ବୋଲି ସାଧାରଣ ଭାବୁକ ବ୍ୟକ୍ତି ଚିନ୍ତା କରବାକୁ ବାଧ ହେଉଛି । ଗୀତ, କାବ୍ୟ, ସଂଗୀତ, ନୃତ୍ୟ, ଅଭିନୟ, ଚିତ୍ର, ମୂର୍ତ୍ତି, ଆଦି କଳାର ସମସ୍ତ ଅଙ୍ଗ ନାରୀର ମାଂସଳତା ଓ କାମୁକତାକୁ ଯଦି ଆକାଶଚୁମ୍ବୀ କରିବାରେ ଲାଗିପଡ଼ନ୍ତି, ତେବେ ଲୋକବୃତ୍ତି ମଧ୍ୟ ସେହି ପନ୍ଥା ଅନୁସରଣ କରିବ । ଏହି ଅପଚେଷ୍ଟାର ଘାତକ ପରିଣାମ ଏବେ ଦୃଷ୍ଟିଗୋଚର ହେଉଛି । ଯୌନ ପ୍ରବୃତ୍ତି ଉତ୍ତେଜିତ ହୋଇଛି, ନର ଓ ନାରୀ ମଧ୍ୟରେ ଥିବା ସୌଜନ୍ୟ ଅନ୍ତର୍ହିତ ହୋଇଛି ଏବଂ ଏକ ଅପର ପାଇଁ ଅହିତକର ହୋଇପଡ଼ିଛନ୍ତି । ଯୌନ ରୋଗର ପ୍ରାବଲ୍ୟ ଦେଖାଦେଇଛି, ଶରୀର ଓ ମନ ଜର୍ଜର ହୋଇପଡ଼ିଛି, ଭବିଷ୍ୟତ ବଂଶଧରଗଣ ଦୁର୍ବଳରୁ ଦୁର୍ବଳତର ହୋଇପଡ଼ିଛନ୍ତି । ଏହି ଅପଚେଷ୍ଟାର ଚିନ୍ତନରେ ନିମଜ୍ଜିତ ହେବା କାରଣରୁ, ମନ ଅନ୍ୟ କୌଣସି ମହତ୍ତ୍ୱପୂର୍ଣ୍ଣ ବିଷୟ ଚିନ୍ତା କରିବାରେ ଅସମର୍ଥ ହୋଇପଡ଼ିଛି । ତେଜ, ଓଜଃ, ବ୍ୟକ୍ତିତ୍ୱ, ପ୍ରତିଭା, ମେଧା, ଶୌର୍ଯ୍ୟ ଓ ବର୍ଚ୍ଚସ୍ୱ– ଯାହା କିଛି ମହାନ୍ ଥିଲା, ସେସବୁ ଏହି ଅପଚେଷ୍ଟାର ବେଦୀରେ ବଳିପଡ଼ିଲେ । ଦୁର୍ବଳ କାୟା ଓ ମାନସିକ ଅବସ୍ଥା ନେଇ ମନୁଷ୍ୟ ଦୀନହୀନ, ପତିତ ଓ ପାପୀରେ ପରିଣତ ହୋଇଛି । ନାରୀକୁ ରମଣୀ ରୂପେ ପ୍ରମାଣିତ କରି ତୁଚ୍ଛ ମନୋରଞ୍ଜନ ଲାଭ କରାଯାଇଛି ସତ, କିନ୍ତୁ ଏହା ଫଳରେ ଯେଉଁ କ୍ଷତି ହୋଇଛି, ତାହାର କଳ୍ପନା କରିବା ଅସମ୍ଭବ । ଯେ କେହି ମାନବୀୟ ପ୍ରବୃତ୍ତିକୁ ଏହି ପତନର ଦିଗରେ ଆଗେଇ ନେବା ପାଇଁ ଚେଷ୍ଟା କରିଛି, ସେ ଦିନେ ନା ଦିନେ ମାନବୀୟ ବିବେକ ଓ ଈଶ୍ୱରୀୟ ନ୍ୟାୟର ଅଦାଲତରେ ଅପରାଧୀ ସମାନ କାଠଗଡ଼ା ଭିତରେ ଠିଆ ହେବ ।

ଯେଉଁମାନେ ଫ୍ରୟେଡ଼ଙ୍କ ପରି ମନୋବୈଜ୍ଞାନିକଙ୍କ ନାମ ଧରି ଏହି କୁତ୍ସାକୁ

ଉତ୍ତେଜିତ କରିବା ଉଦ୍ଦେଶ୍ୟରେ କଳାର ପ୍ରୟୋଜନକୁ ପୂରାପୂରି ସ୍ୱଚ୍ଛନ୍ଦତାର ପାଦ ତଳେ ଚାପି ଦେଇଛନ୍ତି, କହିବାକୁଗଲେ ସେମାନେ ବୁଦ୍ଧିଜୀବୀ ଓ ବିଚାରଶୀଳ ହୋଇପାରନ୍ତି । କିନ୍ତୁ ସେମାନଙ୍କୁ ମାନବ ସଭ୍ୟତା ଉପରେ କଳଙ୍କ ଆରୋପ କରିବା ଦୋଷରେ ଦୋଷୀ କରାଯାଇ ପାରିବ । ମନୋବିଜ୍ଞାନ ଦୃଷ୍ଟିରୁ ନୁହେଁ, ବିଜ୍ଞାନ ଦୃଷ୍ଟିରୁ ମଧ୍ୟ କାମବାସନା ମନୁଷ୍ୟ ପାଇଁ ଅନାବଶ୍ୟକ ନୁହେଁ । କିନ୍ତୁ ତାହାର ଅତି ହେଲେ ସଂକଟପୂର୍ଣ୍ଣ ପରିଣାମ ଦେଖା ଦେଇଥାଏ । ଏହା ବର୍ତ୍ତମାନ ତାହା ହିଁ କରୁଛି । ଏହି ଆତ୍ମପ୍ରବଞ୍ଚନାରୁ ରକ୍ଷା ପାଇବା ଆବଶ୍ୟକ ।

ଲଣ୍ଡନର ଜଣେ ମନୋବୈଜ୍ଞାନିକ ଏହି ସିଦ୍ଧାନ୍ତର ମୂଳଦୁଆ ହଲାଇ ଦେଇଛନ୍ତି । ଲିସେଷ୍ଟର ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ଅଧ୍ୟାପକ ଡେଭିଡ୍ ରାଇଟ୍ ଅନେକ ବନ୍ଦୀ ଶିବିର, ସେନା ଛାଉଣୀ, ଖେଳକୁଦ ଓ ପର୍ବତାରୋହଣ ପରି ସାମାଜିକ୍, ସାମୂହିକ ଓ ରାଷ୍ଟ୍ରୀୟ କାର୍ଯ୍ୟରେ ଅଂଶ ଗ୍ରହଣ କରିଥିବା ବ୍ୟକ୍ତିଙ୍କ ଜୀବନ ବିଷୟରେ ବିସ୍ତାରିତ ଅଧ୍ୟୟନ କଲେ । ଅଧ୍ୟୟନ ପରେ ସେ ଜାଣିପାରିଲେ ଯେ ସେମାନଙ୍କ ଭିତରୁ ଅଧିକାଂଶ ସାଧାରଣ ଅବସ୍ଥାରେ ହିଁ ସମ୍ଭୋଗର ଆନନ୍ଦ ଲାଭ କରିଥାନ୍ତି । ଅଭିଯାନ ସମୟରେ କିମ୍ବା ତା ପରେ ସେମାନେ ସ୍ୱୟଂ ଅତୀତର ସମ୍ଭୋଗ ବିଷୟରେ ସ୍ମରଣ ନ କଲେ କିମ୍ବା ସେମାନଙ୍କ ଆଗରେ ସେପରି ପ୍ରସଙ୍ଗର ଆଲୋଚନା ନ ହେଲେ, ସେମାନଙ୍କ ବିଷୟଭୋଗର ଇଚ୍ଛା ଜାଗ୍ରତ ହୋଇ ନ ଥାଏ । ସେମାନେ ଇଚ୍ଛା ନ କଲେ କିମ୍ବା କାମୁକତାକୁ ଉତ୍ତେଜିତ କରୁଥିବା କୌଣସି ପ୍ରବୃତ୍ତି ସେମାନଙ୍କ ଆଗକୁ ନ ଆସିଲେ, ସେମାନେ କାମ ବାସନା ଯୋଗୁଁ କେବେହେଲେ ବିଚଳିତ ହେବ ନାହିଁ । ବରଂ ସେମାନଙ୍କଠାରେ ବିନୋଦ ତଥା ଆହ୍ଲାଦର ବିକାଶ ହେବ ।

ଅଧ୍ୟାପକ ଡେଭିଡ୍ ରାଇଟ୍ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବନ୍ଦୀ ହୋଇଥିବା ଜାପାନୀ, ସାଇବେରିଆ ଶିବିରରେ ବନ୍ଦୀ ତଥା ବହୁଦିନରୁ ବେମାର ହୋଇ ଡାକ୍ତରଖାନାରେ ଥିବା ରୋଗୀଙ୍କ ସହିତ ସାକ୍ଷାତ୍ କରିଥିଲେ । ସେମାନଙ୍କ ସହିତ କଥାବାର୍ତ୍ତା କରି ସେ ଜାଣିପାରିଲେ ଯେ, ସେମାନଙ୍କ ଠାରେ କାମ ବାସନାର କୌଣସି ଇଚ୍ଛା ନ ଥିଲା । ତଥାପି ସେମାନେ ଅସମର୍ଥ ବା ଉଦ୍‌ବିଗ୍ନ ନଥିଲେ । ବରଂ ସେମାନଙ୍କ ଅନ୍ତଃକରଣରେ ଏକପ୍ରକାର ଶାନ୍ତି ଓ ଆତ୍ମବିଶ୍ୱାସର

ଝଲକ ଦେଖିବାକୁ ମିଳିଲା । ସେ ପରିସ୍ଥିତିରୁ ମୁକୁଳିଗଲେ ସେମାନେ କୌଣସି ଭଲ କାମ କରିବେ ବୋଲି ସେମାନଙ୍କ ମନରେ ଆତ୍ମବିଶ୍ୱାସ ଥିଲା ।

ଅଧ୍ୟାପକ ଡେଭିଡ୍ ରାଇଟ୍‌ଙ୍କର ଏହି ବକ୍ତବ୍ୟ ଅନ୍ୟ ବୈଜ୍ଞାନିକ ଅନୁସନ୍ଧାନ ଦ୍ୱାରା ପୁଷ୍ଟ ହୋଇଛି । ଫଳରେ ଏ ପ୍ରକାର ସିଦ୍ଧାନ୍ତର ବିଲୋପ ଘଟିଛି । ଭବିଷ୍ୟତରେ ଲୋକମାନେ ଫ୍ରୟେଡ୍‌ଙ୍କର ସିଦ୍ଧାନ୍ତର ଦ୍ୱାହି ଦେଇ ମୁଣ୍ଡ ଖରାପ କରିବେ ନାହିଁ କି ଶରୀରର ଶକ୍ତି ନଷ୍ଟ କରିବେ ନାହିଁ । ବରଂ ମନୁଷ୍ୟର ଯଥାର୍ଥ ଲକ୍ଷ୍ୟ ଆଧ୍ୟାତ୍ମିକ ତତ୍ତ୍ୱ ସହିତ ସଂପୃକ୍ତ ଜୀବନର ଅନେକ ଧାରାର ବିକାଶ କରିବାରେ ସମର୍ଥ ହେବ । ଈଶ୍ୱର, ଆତ୍ମା, ପରଲୋକ, ପୁନର୍ଜନ୍ମ ପରି ଆଧ୍ୟାତ୍ମିକ ତତ୍ତ୍ୱର ଅନୁସନ୍ଧାନରେ ବ୍ରହ୍ମଚର୍ଯ୍ୟ ସବୁଠାରୁ ପ୍ରଧାନ ସହାୟକ । ବ୍ରହ୍ମଚର୍ଯ୍ୟ ମାଧ୍ୟମରେ ଶକ୍ତି ସଂଯମ ଏବଂ ତାହା ଦ୍ୱାରା ଜୀବନର ପ୍ରସନ୍ନତା ପାଇଁ ନିତ୍ୟନୂତନ ଉପାୟର ଅନୁସନ୍ଧାନ ପ୍ରତି ଭବିଷ୍ୟତ ବଂଶଧରଙ୍କ ଦୃଷ୍ଟି ଅଧିକ ଭାବରେ ପଡ଼ିବ ।

ମେରିଲ୍ୟାଣ୍ଡ (ଆମେରିକା)ର ନ୍ୟାସନାଲ ଇନ୍‌ଷ୍ଟିଚିଉଟ୍ ଅଫ୍ ଚାଇଲ୍ଡ ହେଲ୍‌ଥ ଆଣ୍ଡ ହ୍ୟୁମାନ ଡେଭେଲପ୍‌ମେଣ୍ଟ (ପିଲାମାନଙ୍କ ସ୍ୱାସ୍ଥ୍ୟ ଏବଂ ମାନବ ବିକାଶର ଆବଶ୍ୟକତା ସମ୍ବନ୍ଧରେ ଗବେଷଣା କରୁଥିବା ଏବଂ ଶିକ୍ଷା ଦେଉଥିବା ଆମେରିକାର ଏକ ରାଷ୍ଟ୍ରୀୟ ସଂସ୍ଥା) ଏକ ଗବେଷଣା ପରେ କହିଛି ଯେ, ମନୁଷ୍ୟ ଶରୀରସ୍ଥ କୋଷିକାରେ ୨୩ ଯୋଡ଼ା ଗୁଣସୂତ୍ର (କ୍ରୋମୋଜୋମ୍ ଅର୍ଥାତ୍ ବ୍ୟକ୍ତିର ସ୍ୱଭାବ ଓ ଶରୀର ଗଠନ କରୁଥିବା ତତ୍ତ୍ୱ) ରହିଛି । ପ୍ରତ୍ୟେକ ଯୋଡ଼ାରେ ପିତାର ଗୋଟିଏ ଓ ମାତାର ଗୋଟିଏ ଗୁଣସୂତ୍ର ଥାଏ । ଏଥି ମଧ୍ୟରେ ୨୨ଟି ଯୋଡ଼ା କାମସମ୍ବନ୍ଧୀ ଗୁଣର ବିକାଶ ସହିତ କୌଣସି ରୂପେ ସଂପୃକ୍ତ ନୁହେଁ । କାମବାସନା ସହିତ କେବଳ ଗୋଟିଏ ଯୋଡ଼ା ସଂପୃକ୍ତ । ଏହାଦ୍ୱାରା ବ୍ୟକ୍ତିଠାରେ କାମପ୍ରବୃତ୍ତିର ନିର୍ଦ୍ଧାରଣ ହୋଇଥାଏ । କେତେକ କ୍ଷେତ୍ରରେ ଦେଖାଯାଉଛି ଯେ, ଏହି ଯୋଡ଼ା ଭିତରୁ କୌଣସି ଗୋଟିଏ ହେଲେ ଗୁଣସୂତ୍ର ମା' କିମ୍ବା ବାପା ତରଫରୁ ନ ଥାଏ । ଏପରି ବ୍ୟକ୍ତିଙ୍କ ଠାରେ ସେକ୍ସ ଅଙ୍ଗର ବିକାଶ ଅସାଧାରଣ ହୋଇଥାଏ; କିନ୍ତୁ ତାଙ୍କର ସ୍ୱଭାବରେ କାମବାସନା ପ୍ରତି କୌଣସି ବିଶେଷ ରୁଚି ନ ଥାଏ । କେତେକ କ୍ଷେତ୍ରରେ ସେମାନେ ଅସାଧାରଣ ପ୍ରତିଭାଧାରୀ ହୋଇଥାନ୍ତି । ଅବଶ୍ୟ ଅନ୍ୟ କେତେକ ଉଦାହରଣ ମଧ୍ୟ ମିଳିଛି । ୨୨ ଯୋଡ଼ା

ଲିଙ୍ଗ ବିହୀନ ଗୁଣସୂତ୍ର (ଅଟୋସପଲ କ୍ରୋମୋଜୋମ୍) ସ୍ଥାନରେ ତାହା ୨୧ ଯୋଡ଼ା ହୁଏ । ବଳକା ୨ ଯୋଡ଼ା ଗୁଣସୂତ୍ର ପୂର୍ଣ୍ଣତଃ କାମ ସମ୍ବନ୍ଧୀୟ ଗୁଣସୂତ୍ର । ବୈଜ୍ଞାନିକଙ୍କ ଗବେଷଣାରୁ ଜଣାପଡ଼ିଛି ଯେ ଏହି ପ୍ରକାର କାମବାସନାର ଗୁଣସୂତ୍ର ଥିବା ସବୁ ବ୍ୟକ୍ତି, ଲମ୍ପଟ, କ୍ରୋଧୀ, ଅସାମାଜିକ ଓ ହିଂସ୍ର ହୋଇଥାନ୍ତି । ଏହାର ତାତ୍ପର୍ଯ୍ୟ ହେଉଛି, କାମବାସନା ଉପରେ ନିୟନ୍ତ୍ରଣ ନଥିଲେ ତାହା ବ୍ୟକ୍ତି ପକ୍ଷରେ ସୁବିଧାଜନକ ନୁହେଁ, ବରଂ ପତନର କାରଣ ହୋଇଥାଏ ।

ଅତିବାଦର ଏକ ଦିଗ ରହିଛି । ତାହା ନାରୀକୁ କାମିନୀ, ରମଣୀ ଓ ବେଶ୍ୟା କରି ତାକୁ ଆକର୍ଷଣର କେନ୍ଦ୍ର ରୂପେ ପରିଣତ କରିଛି । ଅତିବାଦର ଆଉ ଗୋଟିଏ ଦିଗ ନାରୀକୁ ପରଦା ଏବଂ ଓଢ଼ଣାର କଠୋର ବନ୍ଧନରେ ବାନ୍ଧି ପଙ୍ଗୁ ସଦୃଶ କରିଦେଇଛି । ତା ଉପରେ ଯେତିକି କଟକଣା ରଖାଯାଇଛି, ତାହା କୌଣସି ବନ୍ଦୀ ବା ପଶୁ ସହି ପାରିବ ନାହିଁ । କାରାଗାରରେ ସାମାନ୍ୟ ଚାଲବୁଲ କରିବାକୁ, ହସିବା, କହିବାକୁ ବନ୍ଦୀମାନେ ସ୍ୱାଧୀନତା ପାଇଥାନ୍ତି । କିନ୍ତୁ ଘରର ଛୋଟ କୋଠରିରେ ବନ୍ଦୀ ନବବଧୂ ପରିବାରର କନିଷ୍ଠମାନଙ୍କ ସହିତ କଥାବାର୍ତ୍ତା କରିବାର ସ୍ୱାଧୀନତା ହିଁ ପାଇଥାଏ । ବୟସ୍କମାନଙ୍କ ଆଗରେ ସେ ଓଢ଼ଣା ଦେବାକୁ ବାଧ୍ୟ । ସେମାନଙ୍କ ଆଗରେ ଓଢ଼ଣା ଖୋଲିବା ବା ସେମାନଙ୍କ ସହିତ କଥାବାର୍ତ୍ତା କରିବା ନିଷେଧ । ପରଦା ପ୍ରଚଳନ ଓ କଟକଣା ଥିଲେ ନ୍ୟାୟ, ଔଚିତ୍ୟ ଓ ବିବେକ ପାଇଁ ସ୍ଥାନ ରହେ କେଉଁଠି ? ପଶୁ ମଧ୍ୟ ମୁହଁ ଉପରେ ପରଦା ରଖି ରହି ନ ଥାଏ । ସେମାନେ ଅନ୍ୟର ମୁହଁ ଦେଖିପାରନ୍ତି, ଅନ୍ୟକୁ ନିଜର ମୁହଁ ଦେଖାଇ ପାରନ୍ତି । ମନହେଲେ ଯେକୌଣସି ଲୋକ ଆଗରେ ନିଜର ଅବୁଝା ବାଣୀ ଉଚ୍ଚାରଣ କରିପାରନ୍ତି । କିନ୍ତୁ ନାରୀକୁ ଏତିକି ଅଧିକାରରୁ ବଂଚିତ କରାଯାଇଛି ।

ଏହି ଅମାନବିକ କଟକଣାର ଫଳ ପ୍ରତିକୂଳ ହେଲା । ଶାରୀରିକ ସ୍ୱାସ୍ଥ୍ୟ ଦୃଷ୍ଟିରୁ ନାରୀ ପଛେଇ ଗଲା । ଭାରତରେ ପୁରୁଷ ଅପେକ୍ଷା ନାରୀର ମୃତ୍ୟୁହାର ଅଧିକ । ମାନସିକ ଦୃଷ୍ଟିରୁ ସେ ଆତ୍ମହୀନତାର ବନ୍ଧନରେ ବାନ୍ଧି ହୋଇ ଯାଇଛି । ବିଚଳିତ, ଦୀନହୀନ ଏବଂ ଅପରାଧୀ ପରି ସେ ଏଣେତେଣେ ଆତ୍ମଗୋପନ କରୁଛି । ପଦେ ପଦେ ଅନ୍ୟାୟ, ଅତ୍ୟାଚାର ଓ ଅପମାନ ସହି କ୍ରମଶଃ ନିଜର

ମୌଳିକ ବିଶେଷତ୍ୱ ହରାଇ ବସିଛି । ରସ ଚିପୁଡ଼ି ଲେମ୍ବୁ ପିଙ୍ଗିଦେବା ଭଳି ନାରୀର ଅବସ୍ଥା ହୋଇଛି । ନବଯୌବନର ଦୁଇ ଚାରି ବର୍ଷ ଭିତରେ ପତିଦେବଙ୍କ ଆଖିରେ ତା'ର ଉପଯୋଗିତା ଥାଏ । ଅନାଚାରର ବେଦୀ ଉପରେ ତା ସୌନ୍ଦର୍ଯ୍ୟ ବଳିପଡ଼ିବା ମାତ୍ରେ ସେ କେବଳ ଦାସୀ ରୂପେ ରହିଯାଏ । ଆକର୍ଷଣ ଖୋଜି ଭ୍ରମରମାନେ ନୂଆ ନୂଆ ଫୁଲର ସନ୍ଧାନରେ ବାହାରନ୍ତି ଏବଂ ଏଣେତେଣେ ବୁଲନ୍ତି । ଜୀବନ ତେଣିକି ଏକ ଶବ ସମାନ ହୋଇଯାଏ । ସେହି ଶବର ଭାର ବହନ କରି କୋଳର ଶିଶୁକୁ ଦେଖି ଦେଖି ସେ ମରଣର ଦିନ ଗଣେ । ଯାହାଥିଲା, ତାହା ଦୁଇ ଚାରି ବର୍ଷ ଭିତରେ ଅପହୃତ ହୋଇଗଲା । ତା' ପରେ ବିଚାରୀ ନାରୀ କଠୋର ପରିଶ୍ରମ ବଦଳରେ ପିନ୍ଧିବା ପାଇଁ ଲୁଗା ଓ ଖାଇବା ପାଇଁ ମୁଠାଏ ଭାତର ଅଧିକାର ପାଇଥାଏ । ବନ୍ଦିନୀର ଅନ୍ତଃକରଣ ଏ ପରିସ୍ଥିତି ବିରୁଦ୍ଧରେ ଭିତରେ ଭିତରେ ଯେତେ ବିଦ୍ରୋହ କଲେ ସୁଦ୍ଧା ପ୍ରତ୍ୟକ୍ଷ ରୂପେ ସେ କିଛି କରି ନ ପାରିବାର ଅବସ୍ଥାରେ ରହିଯାଏ । ତେଣୁ ମନ ତଳେ ଦୁଃଖକୁ ଚାପିରଖି ଆଖିରୁ ଲୁହ ଗଡ଼ାଇବା ବ୍ୟତୀତ ତା ପାଖରେ ଅନ୍ୟ କୌଣସି ଉପାୟ ରହେ ନାହିଁ ।

ଏପରି ବିଷମ ଅବସ୍ଥାରେ ଥିବା ନାରୀର ବ୍ୟକ୍ତିତ୍ୱ ତା ନିଜ ପାଇଁ, ପରିବାର ତଥା ସନ୍ତାନ ପାଇଁ କିଛି ଅଧିକ ଉପଯୋଗୀ ହୋଇପାରେ ନାହିଁ । ଯେ ନିଜେ ମରୁଛି, ସେ ଅନ୍ୟକୁ ଜୀବନ ଦାନ ଦେବ କେମିତି ? ଗୋଟିଏ ଦିଗରେ ନାରୀର ଗୁଣଗାନ କରି, ତାକୁ ଆକର୍ଷଣ କେନ୍ଦ୍ର ମନେ କରି ସମାଜ ଭାବୁକ ହୋଇଉଠୁଛି । ଅନ୍ୟ ଦିଗରେ ତାକୁ ପଦଦଳିତ, ପୀଡ଼ିତ କରି କଟକଣା ଭିତରେ ଆବଦ୍ଧ କରି ରଖାଯାଉଛି । ଏହା କି ବିଡ଼ମ୍ବନା ? ଏହା ଅତିବାଦର ଦୁଇଟି ସୀମାନ୍ତ ଏବଂ ଏହାର ସମନ୍ୱୟ କରିବା କଠିନ ।

ଆଉ ଏକ ତୃତୀୟ ଅତିବାଦ ମୁଣ୍ଡ ଟେକିଛି । ଅଧ୍ୟାତ୍ମ ମଞ୍ଚରୁ ଘୋଷଣା କରାଯାଉଛି ଯେ ନାରୀ ଦୋଷ, ଦୁର୍ଗୁଣ, ପାପ ଓ ପତନର ମୂଳ କାରଣ । ତେଣୁ ସର୍ବଥା ତା' ଠାରୁ ଦୂରରେ ରହିଲେ ସ୍ୱର୍ଗ, ମୁକ୍ତି ବା ସିଦ୍ଧି ମିଳିବା ସମ୍ଭବ । ଏହି ମତବାଦ ପ୍ରତିପାଦନ କରିବା ପାଇଁ କେତେ କ'ଣ ଉଦାହରଣ ଗଢ଼ାଯାଇଛି । ଲୋକେ ଗୃହତ୍ୟାଗ କରି ଚାଲିଯାଉଛନ୍ତି । ପତ୍ନୀ ଓ ସନ୍ତାନଙ୍କ ହସିବା ଖେଳିବା

ନ ଦେଖି ଦ୍ୱାର ଦ୍ୱାର ବୁଲି ଭିକ୍ଷା କରିବା ଲାଗି ଲୋକମାନେ ଯାଉଛନ୍ତି । ଏମିତି ଯୋଗସାଧନା କରାଯାଏ ବୋଲି ହୁଏତ ସେମାନେ ବୁଝୁଥିବେ । ଏମିତି ହୁଏତ ସ୍ୱର୍ଗ, ମୁକ୍ତି ବା ସିଦ୍ଧି ମିଳୁଥିବ । କିନ୍ତୁ ଯାହା ଦେଖିବାକୁ ମିଳେ, ତାହା ଓଲଟା । ଆନ୍ତରିକ ଅତୃପ୍ତି ସେମାନଙ୍କ ମନୋଭୂମିକୁ ବିକୃତ କରିଦିଏ । ସେହି ତଥାକଥିତ ସନ୍ଥ ମହାତ୍ମାଗଣ ସାଧାରଣ ନାଗରିକଙ୍କ ତୁଳନାରେ ଅତି ଦୟନୀୟ ଅବସ୍ଥାରେ ପଡ଼ିଥାନ୍ତି । ବିରକ୍ତିର ଯେତେ ଛଳନା ସେମାନେ କରନ୍ତି, ଅନୁରକ୍ତିର ପ୍ରତିକ୍ରିୟା ସେହି ଅନୁପାତରେ ଉଗ୍ର ହୋଇଯାଏ । ଯଦି କେହି ସେମାନଙ୍କ ଅନ୍ତର କଥା ଜାଣିପାରେ, ତେବେ ଜଣାଯିବ ଯେ ମନୋବିକାର ସେମାନଙ୍କୁ କେତେ ଜର୍ଜର କରି ରଖିଦେଇଛି । ସ୍ୱାଭାବିକକୁ ଉପେକ୍ଷା କରି ଅସ୍ୱାଭାବିକର ଜାଲ ଜଞ୍ଜାଳରେ ସେମାନେ ଦୟନୀୟ ଭାବରେ ଛନ୍ଦି ହୋଇ ଯାଇଛନ୍ତି । ବାହ୍ୟ ଜୀବନରେ ନାରୀକୁ ଘୃଣା କରୁଥିବା ତଥା ଅନ୍ତରଙ୍ଗରେ ମଧ୍ୟ ତାକୁ ଭୁଲିଯିବାରେ ସଫଳ ହୋଇଥିବା ଅତି ଅଳ୍ପ ବିରକ୍ତ ବ୍ୟକ୍ତି ମିଳିବେ । ସତକଥା ହେଉଛି ବିରକ୍ତିର ଦମ୍ଭ ଅନୁରକ୍ତିକୁ ହଜାର ଗୁଣ ବଢ଼ାଇ ଦେଇଥାଏ । "ମାଙ୍କଡ଼ ବିଷୟରେ ଭାବିବା ନାହିଁ"– ଏମିତି ଚିନ୍ତା କରିବା ମାତ୍ରେ ହିଁ ମାଙ୍କଡ଼ ଆସି ସ୍ମୃତିପଟଳ ଉପରେ ନାଚକୁଦ ଆରମ୍ଭ କରିଦିଏ । ସ୍ୱାଭାବିକ ଭାବରେ ମାଙ୍କଡ଼ ବିଷୟରେ କିଛି ନ ଭାବିଲେ, ହୁଏତ ବର୍ଷ ବର୍ଷ ଧରି ମାଙ୍କଡ଼ କଥା ମନେ ପଡ଼ିବ ନାହିଁ । କିନ୍ତୁ ବର୍ତ୍ତମାନ ମାଙ୍କଡ଼ କଥା ଭାବିଲେ ନରକବାସ ହୋଇପାରେ ବୋଲି କହିଦେବା ମାତ୍ରେ ତା ବିଷୟ ସ୍ମରଣ କରିବାରେ ମନକୁ ବାଧାଦେବା ଅସମ୍ଭବ ହୋଇପଡ଼େ । ଏହି ତଥାକଥିତ ବୈରାଗ୍ୟରେ ନାରୀକୁ ପତନର କାରଣ ବୋଲି କହି କୌଣସି ଉଦ୍ଦେଶ୍ୟ ପୂରଣ ହୋଇ ନାହିଁ । ପରଦା ପଛରେ ଯାହା ହେଉଛି, ତାହା ଦୟନୀୟ । ଅତିବାଦ କେବେହେଲେ ଉପଯୋଗୀ ହୋଇ ନାହିଁ । ମଧ୍ୟମ ପନ୍ଥାରେ ହିଁ କାମ ଚଳେ । ସେଇ ପନ୍ଥା ଧରି କେହିହେଲେ ଶ୍ରେୟର ଅଧିକାରୀ ହୋଇପାରେ ।

ଆଧ୍ୟାତ୍ମିକ କାମ ବିଜ୍ଞାନର ପ୍ରତିପାଦନ ହେଉଛି– ଅତିବାଦର ସୁଦୃଢ଼ ପ୍ରାଚୀରକୁ ଭାଙ୍ଗି ଦିଆଯାଉ ବା ପୁରୁଷ ପରି ନାରୀକୁ ମଧ୍ୟ ସାଧାରଣ ଓ ସ୍ୱାଭାବିକ ସ୍ଥିତିରେ ରହିବାକୁ ଦିଆଯାଉ । ଏପରି ହେଲେ ଏକ ବଡ଼ ଅନୀତିର ପରିସମାପ୍ତି ହୋଇପାରିବ । ଅତିବାଦର ଉଭୟ ପକ୍ଷ ନାରୀର ବର୍ଚ୍ଚସ୍ୱ ଉପରେ ଗଭୀର

ଆଘାତ କରୁଛି । ତାକୁ ଦୁର୍ବଳ, ଜର୍ଜର ଓ ଅନୁପଯୋଗୀ କରିଦେଉଛି । ତେଣୁ ଏ ଜାଲରୁ ତାକୁ ମୁକ୍ତ କରିବା ପାଇଁ ଉଗ୍ର ଓ ସମର୍ଥ ପ୍ରଯତ୍ନ ଆବଶ୍ୟକ ।

ଏ ଦିଗରେ ପ୍ରଯତ୍ନର ରୂପରେଖ ନିର୍ଦ୍ଧାରଣ କରାଯିବା ଉଚିତ । ଯେଉଁମାନେ ନାରୀର ମାଂସଳତାର ଅବାଞ୍ଛନୀୟ ଅଭିବ୍ୟକ୍ତିକୁ ଉତ୍ତେଜିତ କରୁଛନ୍ତି, ସେମାନଙ୍କ ବିଷଯୁକ୍ତ ତୀରକୁ ତୂଣୀରରେ ବନ୍ଦ ରଖିବା ପାଇଁ ସେମାନଙ୍କୁ ଅନୁରୋଧ କରାଯାଇପାରେ । ଚଳଚ୍ଚିତ୍ର ନିର୍ମାତାଗଣ ଏ ଦିଗରେ ଖୁବ୍ ଅଗ୍ରଗତି କରିଛନ୍ତି । ମାଙ୍କଡ଼ ହାତରେ ତରବାରି ଦେଲେ ଯାହା ଆଶଙ୍କା କରାଯାଏ, ସେମାନେ ସେମିତି କାମ ଆରମ୍ଭ କରି ଦେଇଛନ୍ତି । ନିଆଁ ଲଗାଇବା ସହଜ, କିନ୍ତୁ ନିଆଁ ଲିଭାଇବା କଠିନ । ମନୁଷ୍ୟର ପାଶବିକ ପ୍ରବୃତ୍ତିକୁ, ଯୌନ ଉଦ୍‌ବେଗ ଓ କାମ ବିକାରକୁ ଉତ୍ତେଜିତ କରିଦେବା ସହଜ, କିନ୍ତୁ ସେହି ଉତ୍ତେଜନା ଯୋଗୁଁ ଯେଉଁ ସର୍ବନାଶ ହୋଇଥାଏ, ସେଥିରୁ ରକ୍ଷା ପାଇବାର ଉପାୟ ଖୋଜିବା କଠିନ । ଅପରିପକ୍ୱ ପୁଅଝିଅଙ୍କ ଉପରେ ଆଜିର ଚଳଚ୍ଚିତ୍ର କି ପ୍ରଭାବ ପକାଉଛି ଏବଂ ସେମାନଙ୍କ ମାନସିକ ପ୍ରବୃତ୍ତିକୁ କେଉଁ ଦିଗରେ ଟାଣି ନିଆଯାଉଛି, ଏହା ଉପରେ ସୂକ୍ଷ୍ମଦୃଷ୍ଟି ଦେଉଥିବା ବ୍ୟକ୍ତି ଦୁଃଖୀ ନ ହୋଇ ରହିପାରିବ ନାହିଁ । କଳାର ଅନ୍ୟ କ୍ଷେତ୍ରରେ କାମ କରୁଥିବା ବୁଦ୍ଧିଜୀବୀମାନଙ୍କ ଆଗରେ ଯୋଡ଼ ହସ୍ତରେ ପ୍ରାର୍ଥନା କରି ସେମାନଙ୍କୁ ଅନୁରୋଧ କରାଯାଇପାରେ ଯେ ସେମାନେ ନାରୀକୁ ପଦାନତ କରିବାର ପାପପୂର୍ଣ୍ଣ ଅଭିଯାନ ପରିପ୍ରେକ୍ଷୀରେ ଆଜିଯାଏ ଯେତିକି କରିଛନ୍ତି, ତାହାକୁ ଯଥେଷ୍ଟ ବୋଲି ମନେ କରନ୍ତୁ ଓ ଆଉ ସେ ଦିଗରେ ଅଗ୍ରସର ନ ହୁଅନ୍ତୁ । ବିକାର ଉତ୍ପାଦକ ପ୍ରବୃତ୍ତିକୁ ଉତ୍ତେଜିତ କରିବା ଭଳି କବିତା କବିମାନେ ନ ଲେଖନ୍ତୁ । ସାହିତ୍ୟକାର, ଉପନ୍ୟାସକାରମାନେ କଲମ ବ୍ୟବହାର କରି ନାରୀର ଗୋପନୀୟ ସନ୍ଦର୍ଭ ଉପରେ ଉତ୍ତେଜକ ଆଲୋଚନା ପରିହାର କରି, ସରସ୍ୱତୀଙ୍କ ସାଧନାକୁ ଅଗଣିତ ଧାରାରେ ପ୍ରୟୋଗ କରି ନିଜ ପ୍ରତିଭାର ପରିଚୟ ଦିଅନ୍ତୁ । ଗାୟକଗଣ ବିକାର ଉତ୍ତେଜନା ଓ ଶୃଙ୍ଗାର ରସକୁ କିଛିଦିନ ଲାଗି ବିଶ୍ରାମ ଦିଅନ୍ତୁ । ସାମନ୍ତବାଦୀ ଅନ୍ଧକାର ଯୁଗରେ ତାହା ହିଁ ଏକଛତ୍ର ଆଧିପତ୍ୟ କରୁଥିଲା । ଗତକାଳରେ ଗାୟନର ଅର୍ଥ ଥିଲା କାମେନ୍ଦ୍ରିୟ । ରାଜାଙ୍କ ଦରବାର ଠାରୁ ଆରମ୍ଭ କରି ବାରବୁଲା ହିପ୍ପୀ ପର୍ଯ୍ୟନ୍ତ ସମସ୍ତେ ଏହା ହିଁ ଇଚ୍ଛା କରୁଥିଲେ ।

ବର୍ତ୍ତମାନ ସେହି ସଂଗୀତକୁ ବିଶ୍ରାମ ଦେଇ ଅନ୍ୟରସକୁ ବଞ୍ଚି ରହିବାକୁ ଦେଲେ କ୍ଷତି କ'ଣ ? କେତେଦିନଧରି ଘୁଙ୍ଗୁର ନ ବାଜିଲେ, ରୁଣଝୁଣୁ ଶବ୍ଦ ନ କଲେ ସୁଦ୍ଧା କଳା ବଞ୍ଚି ରହିବ । ନବଯୌବନର ଶାଳୀନତା ଉପରେ ଚିତ୍ରକାରମାନେ ପରଦା ପକାଇ ଦିଅନ୍ତୁ । ପତିତ ଦୁଃଶାସନ ଦ୍ୱାରା ଦ୍ରୌପଦୀଙ୍କୁ ବିବସ୍ତ୍ର କରିବାର ଅପଚେଷ୍ଟା ନ କଲେ ସୁଦ୍ଧା ସେମାନଙ୍କ ଚିତ୍ର ପ୍ରଶଂସନୀୟ ହେବ । ମୂର୍ତ୍ତିକାରଗଣ ମାନବୀୟ ଅନ୍ତର୍ବେଦନାକୁ ପରିସ୍ଫୁଟ କରୁଥିବା ମୂର୍ତ୍ତି ଗଠନ କରିବେ ନାହିଁ କାହିଁକି ? ସୌଜନ୍ୟର ବାଳକ ଅଭିମନ୍ୟୁକୁ ଏପରି ଭାବରେ ହତ୍ୟା ନ କରିବା ପାଇଁ ଏ କଳାକାରଙ୍କୁ ଅନୁରୋଧ କରାଯିବା ଆବଶ୍ୟକ । ମହାଭାରତର ଅନେକ କୁକର୍ମ ମହାରଥୀମାନଙ୍କ ମଥାରେ କଳଙ୍କର ଟୀକା ଦେଇଗଲା । ଏବେ ପୁଣି କଳାକାର ମହାରଥୀମାନଙ୍କ ଚକ୍ରବ୍ୟୂହରେ ବନ୍ଦୀ ଶାଳୀନତାର ଅଭିମନ୍ୟୁକୁ ଠିକ୍ ସେମିତି ହତ୍ୟା କଲେ, ଏଇ ଭାରତ-ମହାଭାରତକୁ ସମସ୍ତେ ଆଦର୍ଶବାଦ ଏବଂ ଆଧ୍ୟାତ୍ମିକତାର ଢୋଲ ପିଟୁଥିବା ଦାମ୍ଭିକ ବୋଲି ମନେ କରିବେ । ଯେଉଁ ଦେଶର କଳାକାରଗଣ ନିଜର ଦାୟିତ୍ୱ ହୃଦୟଙ୍ଗମ କରି ନାହାନ୍ତି, ସେ ଦେଶର ସାଧାରଣ ନାଗରିକଙ୍କ ଠାରୁ କେହି କ'ଣ ଆଶା କରିବ ? ସେମାନଙ୍କ ବିଷବୋଳା ତୀର ଯଦି ଏମିତି ଚାଲିବ, ତେବେ ନବଯୁଗ ନିର୍ମାଣ ସକାଶେ ଭାରତ ଠାରୁ ଯେଉଁ ଆଲୋକର ଆଶା କରାଯାଏ, ସେ ଦୀପ ଲିଭିଯିବ । କଳାକାରଗଣ କୃପା କରି ସେମାନଙ୍କ ପାଦ ପଛକୁ ଫେରାଇବା ପାଇଁ ଅନୁରୋଧ କରାଯାଇପାରେ । ସେମାନଙ୍କର ଏହି ଅନୁଗ୍ରହ ବିନା ନାରୀର ଶାଳୀନତା, ପବିତ୍ରତା ଓ ସାମର୍ଥ୍ୟକୁ ରକ୍ଷା କରାଯାଇ ନ ପାରେ ।

ନାରୀ ପ୍ରତି ଆମର ଦୃଷ୍ଟିକୋଣ ସଖା, ସହଚର ଓ ମିତ୍ରଭଳି ସରଳ ଏବଂ ସ୍ୱାଭାବିକ ହେବା ଆବଶ୍ୟକ । ସାଧାରଣ ମନୁଷ୍ୟ ଅପେକ୍ଷା ତାକୁ ଉଚ୍ଚ ବା ନୀଚ ମନେ କରାଯାଇ ନପାରେ । ପୁରୁଷ ସହିତ ପୁରୁଷ ଓ ନାରୀ ସହିତ ନାରୀ ଭେଟ୍‌ହେଲେ ତାହାର ଅନ୍ୟ ଅନେକ ଉଦ୍ଦେଶ୍ୟ ଥାଏ । କାମ ସେବନ ପରି କଥା ସେମାନେ ଚିନ୍ତା କରି ନ ଥାନ୍ତି । ଠିକ୍ ସେମିତି ନର ଓ ନାରୀର ମିଳନ ସ୍ୱାଭାବିକ, ସରଳ ତଥା ସୌମ୍ୟ ହେବା ଉଚିତ । ଏହା ପ୍ରାକୃତିକ ଅବସ୍ଥା, ତେଣୁ ସୁନିଶ୍ଚିତ ରୂପେ ଏ ଅବସ୍ଥା ଆସିପାରେ । ସେମିତି, କଟକଣା

କଲେ ବ୍ୟଭିଚାର ଶେଷ ହେବ ନାହିଁ, ବରଂ ବୃଦ୍ଧି ପାଇବ । ଏ ବିଷୟରେ ରକ୍ଷଣଶୀଳମାନଙ୍କୁ ବୁଝାଇଦେବା ଦରକାର । ଯେଉଁ ନାରୀର ମୁହଁ ଓଢ଼ଣା ତଳେ ଥାଏ, ତାହାକୁ ଦେଖିବା ପାଇଁ ମନ ବଳିବ । ଅଥଚ ମୁହଁ ନ ଢାଙ୍କି ସଡ଼କ ଉପରେ ବୁଲୁଥିବା ହଜାର ହଜାର ନାରୀ ରୂପବତୀ ହୋଇଥାନ୍ତୁ କି କୁରୂପ ହୋଇଥାନ୍ତୁ, ସେମାନଙ୍କ ଆଡ଼କୁ ଆଖି ପକାଇବାକୁ ଇଚ୍ଛା ହୁଏ ନାହିଁ । ପୁରୁଷ ଓ ନାରୀର ସଂପର୍କ ବାସନା ଅତିରିକ୍ତ ଆଉ କିଛି ହୋଇ ନ ପାରେ । ଏଇ ଧାରଣାକୁ ପରଦା ପ୍ରଥା ବଳିଷ୍ଠ କରିଥାଏ । ଏପରି ବିଚାର ଅତ୍ୟନ୍ତ କଳୁଷିତ, ହେୟ ତଥା ନିକୃଷ୍ଟ ଶ୍ରେଣୀର । ଆମର ଭଗିନୀ, କନ୍ୟା, ମାତା, ପତ୍ନୀ, କୌଣସି କଟକଣା ନ ଥାଇ ସ୍ୱେଚ୍ଛାରେ ନିଜର ଶାଳୀନତାକୁ ଅକ୍ଷତ ରଖିପାରିବେ । ସେମାନଙ୍କ ଉପରେ ଆମର ଏତିକି ବିଶ୍ୱାସ ରହିବା ଉଚିତ । କେଉଁ ଯୁଗରେ ଶାସକଗଣ ନିରୀହ ପ୍ରଜାଙ୍କର ଭଉଣୀ ଓ କନ୍ୟାର ସତୀତ୍ୱ ଅପହରଣ କରିବା ପାଇଁ ବନ୍ୟ ପଶୁ ପରି ଗଳିକନ୍ଦିରେ ଘୂରି ବୁଲୁଥିଲେ । ସେ ଯୁଗ ଚାଲିଯାଇଛି । ଏବେ ଆମେ ଆତ୍ମରକ୍ଷା ପାଇଁ ଉପଯୁକ୍ତ ପରିସ୍ଥିତି ଭିତରେ ଜୀବନଧାରଣ କରୁଛୁ । ତେଣୁ ଆକ୍ରମଣକାରୀ ଏବଂ ଆତତାୟୀଙ୍କ ଭୟରେ ନାରୀ ଉପରେ କଟକଣା ରଖିବାର କୌଣସି ଆବଶ୍ୟକତା ନାହିଁ । ତେଣୁ କାହିଁକି ଆମେ ଓଢ଼ଣା, ପରଦା ଓ କଟକଣାର ବନ୍ଧନରେ ତାକୁ ବାନ୍ଧିବା ? ତାର ସ୍ୱାଭାବିକ ଜୀବନର ଈଶ୍ୱର ପ୍ରଦତ୍ତ ସୁବିଧାକୁ ଛଡ଼ାଇ ନେବାର ପାପ କାହିଁକି ଅର୍ଜନ କରିବା ? ଠିକ୍ ସେମିତି ଅଧ୍ୟାତ୍ମବାଦ ନାମରେ ନାରୀକୁ ତିରସ୍କୃତ ଓ ବହିଷ୍କୃତ କରିବାର ଅସମୟ ରାଗ ଆଳାପ କରିବା କାହିଁକି ? ଆମେ ଯେଉଁ ଭଗବାନଙ୍କ ଉପାସନା କରୁ, ଯେଉଁ ଭଗବାନଙ୍କ ଆଗରେ ସ୍ୱର୍ଗ, ମୁକ୍ତି, ସିଦ୍ଧି ଭିକ୍ଷା କରୁ, ସେ ସ୍ୱୟଂ ସପତ୍ନୀକ । କୌଣସି ଭଗବାନ ଏକାକୀ ନୁହଁନ୍ତି । ରାମ, କୃଷ୍ଣ, ଶିବ, ବିଷ୍ଣୁ ଆଦି ଯେକୌଣସି ଦେବତା ବିବାହିତ । ସରସ୍ୱତୀ, ଲକ୍ଷ୍ମୀ, କାଳୀଙ୍କ ସମାନ ଦେବୀମାନେ ଦାମ୍ପତ୍ୟ ଜୀବନ ସ୍ୱୀକାର କରିଛନ୍ତି । ପ୍ରତ୍ୟେକ ଭଗବାନ ଓ ଦେବତାଙ୍କ ସହିତ ସେମାନଙ୍କ ପତ୍ନୀମାନେ ବିରାଜମାନ ଅଛନ୍ତି । ଆମ ମନ ଆମ ଇଷ୍ଟଦେବଙ୍କ ଆଦର୍ଶ ଠାରୁ ଅଲଗା ଚିନ୍ତା କରିବ କାହିଁକି ?

ସପ୍ତଋଷିଙ୍କ ଭିତରୁ ସାତଜଣଯାକ ବିବାହିତ ଥିଲେ । ସେମାନଙ୍କ ସାଧନା

କାଳ, ତପସ୍ୟା ସମୟରେ ସୁଦ୍ଧା ସେମାନଙ୍କ ପତ୍ନୀମାନେ ତାଙ୍କ ସହିତ ରହୁଥିଲେ । ସେମାନେ ତାଙ୍କ କାର୍ଯ୍ୟରେ ତିଳପ୍ରମାଣ ବାଧା ଉତ୍ପନ୍ନ କରି ନ ଥିଲେ, ବରଂ ସାହାଯ୍ୟ କରିଥିଲେ । ପ୍ରାଚୀନକାଳରେ ନାରୀ ଯୋଗୁଁ ଆତ୍ମିକ ପ୍ରଗତିରେ କୌଣସି ବିଘ୍ନ ହୋଇପାରେ ବୋଲି କେହି ଚିନ୍ତା କରୁ ନ ଥିଲେ ।

ରାମକୃଷ୍ଣ ପରମହଂସ ବିବାହ କରିବାର ଆବଶ୍ୟକତା ଅନୁଭବ କଲେ । ସେ ଆତ୍ମିକ ପ୍ରଗତିର ଉଚ୍ଚ ସ୍ତରରେ ପହଞ୍ଚିବା ପରେ ଏହି ବ୍ୟବସ୍ଥା କରିଥିଲେ । କାମ ସେବନ ଓ ନାରୀର ସାନ୍ନିଧ୍ୟ ଏକା କଥା ନୁହେଁ । ଏହାର ପାର୍ଥକ୍ୟ ଭଲଭାବରେ ବୁଝିବା ଦରକାର । ଯୋଗୀ ଅରବିନ୍ଦଙ୍କ ସାଧନାର ସ୍ତର କେତେ ଉଚ୍ଚ ଥିଲା, ସେଥିରେ ସନ୍ଦେହର ଅବକାଶ ନାହିଁ । ଶ୍ରୀମା ତାଙ୍କ ଏକାକୀ ଜୀବନକୁ ବ୍ୟବସ୍ଥିତ କରିଥିଲେ । ଏହା ଫଳରେ ସେମାନଙ୍କ ଆତ୍ମିକ ମହତ୍ତ୍ୱ ବୃଦ୍ଧି ପାଇଥିଲା ସିନା, କମ୍ ହୋଇ ନ ଥିଲା । ପ୍ରାତଃ ସ୍ମରଣୀୟା ଶ୍ରୀମା ଅରବିନ୍ଦଙ୍କ ସମ୍ପର୍କରେ ଥାଇ ପ୍ରଭୂତ ଜ୍ଞାନ ଲାଭ କରିଥିଲେ । ଏହି ସାନ୍ନିଧ୍ୟ ଯୋଗୀରାଜଙ୍କୁ ଗଙ୍ଗା ସମାନ ପୁଣ୍ୟଫଳ ପ୍ରଦାନ କରିଥିଲା । ପ୍ରାଚୀନ କାଳର ଋଷି ପରମ୍ପରା ମୂଳରୁ ଶେଷ ପର୍ଯ୍ୟନ୍ତ ଏହି ସରଳ ସ୍ୱାଭାବିକ ଅବସ୍ଥାକୁ ପ୍ରମାଣିତ କରିଛି । ତପସ୍ୱୀ ଋଷିଗଣ ସପତ୍ନୀକ ବାସ କରୁଥିଲେ । ଆବଶ୍ୟକ ହେଲେ ପ୍ରଜନନର ବ୍ୟବସ୍ଥା କରୁଥିଲେ । ଅନ୍ୟଥା ଆଜୀବନ ବ୍ରହ୍ମଚାରୀ ଭାବରେ ରହି ନାରୀ ସାନ୍ନିଧ୍ୟର ବ୍ୟବସ୍ଥା ରକ୍ଷା କରୁଥିଲେ । ତାହା ସେମାନଙ୍କ ବିବେକ ଉପରେ ନିର୍ଭର କରୁଥିଲା । କୌଣସି ପ୍ରତିବନ୍ଧକ ନ ଥିଲା । ଆଜି ମଧ୍ୟ ଏ ପରିସ୍ଥିତି ଉପଯୋଗୀ ହୋଇପାରେ । ସନ୍ଥଗଣ ବିବାହିତ କିମ୍ବା ଅବିବାହିତ ରହି ସ୍ୱେଚ୍ଛାପୂର୍ବକ ବ୍ୟକ୍ତିଗତ ଜୀବନ କଟାଇ ପାରନ୍ତି । କିନ୍ତୁ ନାରୀକୁ ନରକର ଦ୍ୱାର ବୋଲି ଡିଣ୍ଡିମ ପିଟୁଥିବା ଅତିବାଦକୁ ଶେଷ କରିଦେବା ଲାଗି ସେମାନେ ଚେଷ୍ଟା କରିବା ଦରକାର । ଏପରି ହୋଇଥିଲେ ଗାନ୍ଧିଜୀଙ୍କ ପରି ସନ୍ଥ ନାରୀକୁ ପରିତ୍ୟାଗ କରିବା ବିଷୟ ଚିନ୍ତା କରିଥାନ୍ତେ । କୌଣସି ବ୍ୟକ୍ତି ଯଦି ଅଧିକ ସେବା ସୁବିଧା ଦୃଷ୍ଟିରୁ ବା ଦାୟିତ୍ୱ ହାଲୁକା କରିବା ଦୃଷ୍ଟିରୁ ଅବିବାହିତ ଅବସ୍ଥାରେ ରହନ୍ତି, ତେବେ ତାହା ତାଙ୍କର ବ୍ୟକ୍ତିଗତ ସିଦ୍ଧାନ୍ତ । ଏଣୁ ଏହା କୌଣସି ପ୍ରତିବନ୍ଧକ ବୋଲି ଚିନ୍ତା କରାଯାଇ ନ ପାରେ । ଅସଲ କଥା ହେଉଛି– ସନ୍ଥମାନେ ଯଦି ସପତ୍ନୀକ ସେବାକାର୍ଯ୍ୟରେ ଲାଗିଯାନ୍ତି, ତେବେ

ସମାଜରେ ସେମାନେ ନିଜର ଆଦର୍ଶ ପ୍ରଦର୍ଶନ କରି ଉଚ୍ଚସ୍ତରୀୟ ଗୃହସ୍ଥ ଜୀବନର ସମ୍ଭାବନାକୁ ପ୍ରତ୍ୟକ୍ଷ ପ୍ରମାଣିତ କରନ୍ତେ ।

କାମର ଅର୍ଥ ହେଉଛି– ବିନୋଦ, ଉଲ୍ଲାସ ଓ ଆନନ୍ଦ । ମୈଥୁନ କ୍ରିୟାକୁ କାମ କୁହାଯାଇ ନ ପାରେ । କାମ କ୍ଷେତ୍ରର ପରିଧିରେ ତାହା ଏକ ଅତି ଛୋଟ, ନଗଣ୍ୟ ମାଧ୍ୟମ ହୋଇପାରେ । କିନ୍ତୁ ତାହା ନିରନ୍ତର ସ୍ଥାୟୀ ବସ୍ତୁ ନୁହେଁ । କେବେ କେମିତି ଏହାର ଉପଯୋଗିତା ଥାଇପାରେ । ତେଣୁ ମୈଥୁନକୁ ଅଲଗା କରି, ଉପେକ୍ଷଣୀୟ ମନେ କରି ମଧ୍ୟ କାମ କରାଯାଇ ପାରେ । ସ୍ନେହ, ସଦ୍‌ଭାବ, ବିନୋଦ, ଉଲ୍ଲାସର ଉଚ୍ଚସ୍ତରୀୟ ଅଭିବ୍ୟକ୍ତି ଯେଉଁ ପରିଧିର ଅନ୍ତର୍ଭୁକ୍ତ, ତାହାକୁ ''ଆଧ୍ୟାତ୍ମିକ କାମ'' କୁହାଯାଇପାରେ । ଏହା ଛୋଟ ପିଲାଙ୍କ ଠାରୁ ଆରମ୍ଭ କରି ବୃଦ୍ଧଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ କ୍ଷେତ୍ରରେ ସମାନ ଭାବରେ ପ୍ରଯୁକ୍ତ ହୋଇପାରେ । ନାରୀ ଓ ନରକୁ ଏହି ଭାବପ୍ରବାହରୁ ବଞ୍ଚିତ କରାଯାଇ ନ ପାରେ । ଘରେ ଭଉଣୀ, ଝିଅ, ମା', ଭାଉଜ, ଖୁଡ଼ୀ, ଜେଜେମା, ପିଉସୀ, ଝିଆରୀମାନଙ୍କ ସହିତ ରହି, ଆଦର ଓ ପ୍ରେମର ପବିତ୍ର ବନ୍ଧନ ରକ୍ଷା କରି ଆନନ୍ଦମୟ ଜୀବନ ଯାପନ କରାଯାଇପାରେ । ତାହାହେଲେ ଘରର ବାହାର ପରିଧିରେ ଏପରି ହୋଇ ନ ପାରିବ କାହିଁକି ? ଆମେ ନିଜ ପରିବାର ପରି ପଡ଼ୋଶୀଙ୍କ ପରିବାରରେ ନର ଓ ନାରୀର ଭେଦଭାବ ନ ରଖି ପ୍ରେମ ବିସ୍ତାର କରିପାରିବୁ ନାହିଁ କାହିଁକି ?

ପୁରୁଷ ଓ ନାରୀ ମଧ୍ୟରେ ବ୍ୟାପକ ସଦ୍‌ଭାବ, ସହଯୋଗ ଓ ସଂପର୍କ ଥିବା ଅବସ୍ଥାରେ ହିଁ ବ୍ୟକ୍ତି ଓ ସମାଜର ବିକାଶ ସମ୍ଭବ ହୋଇପାରେ । ଏଥିରେ ତିଳ ପ୍ରମାଣ କ୍ଷତି ନାହିଁ । ଗୋଟିଏ କଥା ମନେ ରଖିବା ଉଚିତ ଯେ ପାପ କିମ୍ବା ବ୍ୟଭିଚାରର ସୃଷ୍ଟି ସଂପର୍କ ଦ୍ୱାରା ନୁହେଁ, ବରଂ ଦୁର୍ବୁଦ୍ଧି ଦ୍ୱାରା ହୋଇଥାଏ । ପୁରୁଷ ଡାକ୍ତର ନାରୀର ପ୍ରଜନନ ଅବୟବରେ ସୁଦ୍ଧା ଅସ୍ତ୍ରୋପଚାର କରିଥାନ୍ତି । ଏଥିରେ ପାପ ନାହିଁ, ଅଶ୍ଳୀଳତା ବା ଅନର୍ଥ ମଧ୍ୟ ନାହିଁ । ରେଳଗାଡ଼ିର ଭିତରେ ନର ଓ ନାରୀ ଉଭୟଙ୍କ ଶରୀର ପରସ୍ପର ସହିତ ଚିପି ହୋଇଯାଏ । ଯେଉଁଠାରେ ପାପ ପ୍ରବୃତ୍ତି ନାହିଁ, ସେଠାରେ ଶରୀରର ସ୍ପର୍ଶ ଦୂଷିତ ହେବ କେମିତି ? ଆମେ ଯେବେ ଆମର ଯୁବତୀ କନ୍ୟାର ମୁଣ୍ଡରେ ବା ପିଠିରେ ସ୍ନେହରେ ହାତ ବୁଲାଉ, ସେଥିରେ ପାପ ହୁଏ କି ? ସାନ୍ନିଧ ପାପ ନୁହେଁ । ପାପ ଅନ୍ୟ ଏକ ସଂକ୍ରାମକ

ରୋଗ ଏବଂ ଏହା କୌଣସି ଚିତ୍ର ଦେଖି ମଧ୍ୟ ଚିତ୍ତକୁ ଉଦ୍‌ବିଗ୍ନ କରିବାରେ ସମର୍ଥ । ଏହି ରୋଗର ଚିକିତ୍ସା କରିବା ଆବଶ୍ୟକ । ଆମ ମନର କୁତ୍ସା ପାଇଁ ବିଚାରୀ ନାରୀ ଦଣ୍ଡଭୋଗ କରିବ ଏହା ଘୋର ଅନ୍ୟାୟ । ଯେପର୍ଯ୍ୟନ୍ତ ଏ ଅନୀତି ଅନୁସରଣ କରାଯିବ, ସେପର୍ଯ୍ୟନ୍ତ ନାରୀର ସ୍ଥିତି ଦୟନୀୟ ହୋଇ ରହିବ ଏବଂ ବ୍ୟକ୍ତି ଓ ସମାଜ ଅସଂଖ୍ୟ ଅଭିଶାପ ରୂପେ ଏହି ପାପର ଫଳ ଭୋଗ କରିବେ ।

ପୁରୁଷ ଓ ନାରୀ ସ୍ନେହୀ, ସହଯୋଗୀ ପରି, ମିତ୍ର ଓ ସଖା ପରି, ପରସ୍ପରର ପୂରକ ହୋଇ ସରଳ ସ୍ୱାଭାବିକ ନାଗରିକ ସମାନ ଆନନ୍ଦ ଉପଭୋଗ କରି ଜୀବନ ଯାପନ କରିବାର ମାନସିକ ଅବସ୍ଥା ଲାଭ କରନ୍ତୁ । ପ୍ରଭୁ ଏ ଶୁଭଦିନ ଆଣନ୍ତୁ । ଆମେ ବିକାରକୁ ବାଧା ଦେବା, ସାନ୍ନିଧ୍ୟକୁ ନୁହେଁ । ସାନ୍ନିଧ୍ୟକୁ ବାଧା ଦେଇ ବିକାରକୁ ନିୟନ୍ତ୍ରଣ କରିବା ସମ୍ଭବ ନୁହେଁ । ତେଣୁ ବିକାର ଓ ବ୍ୟଭିଚାର ଉତ୍ପନ୍ନ କରୁଥିବା ସ୍ରୋତକୁ ଅବରୁଦ୍ଧ କରିବା ଆବଶ୍ୟକ । ଅଗ୍ନି ଓ ସୋମ, ପ୍ରାଣ ଓ ରୟି, ଋଣ ଓ ଧନ ବିଦ୍ୟୁତ୍ ପ୍ରବାହର ସମନ୍ୱୟ ଏହି ସୃଷ୍ଟିର ସଂଚରଣ ଓ ଉଲ୍ଲାସକୁ ଅଗ୍ରଗାମୀ କରାଇବ । ନର ଓ ନାରୀ ମଧ୍ୟରେ ସୌମ୍ୟ ସଂପର୍କ ବୃଦ୍ଧି କରି ଆମେ କିଛି ହରାଇବା ନାହିଁ, ବରଂ ପାଇବା ବହୁତ ।

***

# କାମକ୍ରୀଡ଼ାର କେବଳ ଉପଯୋଗିତା ନୁହେଁ, ବରଂ ବିଭୀଷିକା ପ୍ରତି ଦୃଷ୍ଟି ଦିଅନ୍ତୁ

ଅତୀତରେ ଅଗ୍ନିତତ୍ତ୍ୱ ଯଥେଷ୍ଟ ମହତ୍ତ୍ୱ ଲାଭ କରିଥିଲା । ସୋମ ତତ୍ତ୍ୱ ଉପେକ୍ଷିତ ହୋଇ ଗୋଟିଏ କୋଣରେ ପଡ଼ିରହିଲା । ଫଳରେ ସୃଷ୍ଟିର ଓ ସମାଜର ସବୁ ବ୍ୟବସ୍ଥା ଗୋଳମାଳ ହୋଇଗଲା । ହୋମକୁଣ୍ଡ ଚାରି ପାଖରେ ଏକ ଜଳପୂର୍ଣ୍ଣ ନାଳୀ ରଖାଯାଇଥାଏ । ଯଜ୍ଞକୁଣ୍ଡର ଅଗ୍ନି ଯେତେ ପ୍ରଦୀପ୍ତ ହେଲେ ସୁଦ୍ଧା ତା ଚାରିପାଖରେ ସୋମର, ଜଳର ଘେରା ରଖିବା ଆବଶ୍ୟକ । କର୍ମକାଣ୍ଡ କରୁଥିବା ବ୍ୟକ୍ତିମାନେ ଏହା ଜାଣନ୍ତି । ଯେତିକି ଧୁମଧାମ ଜଳଯାତ୍ରା କରାଯାଏ, ଜଳ ଦେବତାଙ୍କ ସ୍ଥାପନା କରାଯାଏ, ଯଜ୍ଞ ସମାରୋହରେ ଅଗ୍ନିକୁ ସେମିତି ଧୁମଧାମର ସହିତ ସ୍ଥାପନା କରାଯାଇ ନଥାଏ । ଅଗ୍ନିର, ଗ୍ରୀଷ୍ମ ଋତୁର ଉତ୍ତାପ ତୀବ୍ର ହେବା ମାତ୍ରେ ବର୍ଷାଋତୁ ଧାଇଁଆସେ ଓ ସେ ଉତ୍ତାପର ସମାଧାନ କରିଦିଏ ।

ନରର ଅଗ୍ନିକୁ ଉତ୍ତାପ ଏବଂ ନାରୀର ସୋମକୁ ଜଳ କୁହାଯାଏ । ନରଠାରେ ଥିବା ପ୍ରାଣଶକ୍ତିର, ପୁରୁଷାର୍ଥ କ୍ଷମତା ଓ କଠୋରତାର, ବୌଦ୍ଧିକ କ୍ଷମତାର ନିଜସ୍ୱ ସ୍ଥାନ ରହିଛି । ତାହାର ଉପଯୋଗ ହେବା ଆବଶ୍ୟକ । ତାହାକୁ ଶୃଙ୍ଖଳହୀନ ଅବସ୍ଥାରେ ଛାଡ଼ିଦେଲେ, ତା' ଉପରେ ନାରୀର ନିୟନ୍ତ୍ରଣ ନଥିଲେ, ସୃଷ୍ଟିରେ କ୍ରୂରତା ଓ ଦୁଷ୍ଟତାର ଉତ୍ତାପ ବୃଦ୍ଧି ପାଇବ । ପରମ୍ପରା ଅନୁଯାୟୀ ନରର ଶ୍ରମ ଓ ସାହସର ଉପଯୋଗ କ୍ରମ ଚାଲେ । କିନ୍ତୁ ନାରୀ ତାର ମୃଦୁଳ ଭାବନା ଦ୍ୱାରା ତାହାକୁ ମର୍ଯ୍ୟାଦା ଭିତରେ ରହିବା ପାଇଁ ନିୟନ୍ତ୍ରଣ ଓ ବାଧ କରେ । ତା'ର ମଧୁର, ସ୍ନେହସିକ୍ତ ଭାବନା କ୍ରୂରତାକୁ କୋମଳତାରେ ରୂପାନ୍ତରିତ କରିବାରେ ଅଦ୍‌ଭୁତ ସଫଳତା ଲାଭ କରିଛି । ଏହି କ୍ରମ ଯଦି ଠିକ୍ ଭାବରେ ଚାଲନ୍ତା, ପୁରୁଷ ନିଜର ଶୌର୍ଯ୍ୟ, ଓଜସ୍ ଓ ପ୍ରଖରତା ସାହାଯ୍ୟରେ ସମ୍ପଦ ଉପାର୍ଜନ କରନ୍ତା ଏବଂ ନାରୀ ନିଜର ମୃଦୁଳ ସ୍ୱଭାବ ସାହାଯ୍ୟରେ ତାହାକୁ ସୌମ୍ୟ, ସହୃଦୟ କରନ୍ତା, ତେବେ ଉପଯୁକ୍ତ ଦୁଇ ଚକିଆ ଗାଡ଼ିରେ, ପ୍ରଗତି ଦିଗରେ ସୃଷ୍ଟି ବ୍ୟବସ୍ଥାର ଯାତ୍ରା ଉଭୟ

ଠିକ୍ ରୂପେ ସଂପାଦନ କରିପାରନ୍ତେ । ଚିରକାଳ ଧରି ଏହି କ୍ରମ ଚାଲୁଥିଲା । ନର ଉପାର୍ଜନ କରୁଥିଲା ଏବଂ ତାହାର ଉପଯୋଗ କରୁଥିଲା ନାରୀ । ବର୍ତ୍ତମାନ ସେ କ୍ରମ ଆଉ ନାହିଁ । ବର୍ତ୍ତମାନ ଶୃଙ୍ଖଳାହୀନ ନର ସବୁ କ୍ଷେତ୍ରରେ ସର୍ବସତ୍ତାସମ୍ପନ୍ନ ଦୈତ୍ୟ, ଦାନବ ପରି ନିରଙ୍କୁଶ ପ୍ରଭାବର ଉଦ୍ଧତ ଉପଯୋଗ କରୁଛି । ନାରୀ କେବଳ ଭୋଗ୍ୟା, ରମଣୀ ଓ କାମିନୀ ରୂପେ ବିଷୟ ବିକାରର ପରିତୃପ୍ତି ପାଇଁ ଏକ ବସ୍ତୁ ରୂପେ, ରହିଯାଇଛି । ଅନାଦି କାଳରୁ ସ୍ରଷ୍ଟା ଯେଉଁ ଅଧିକାର ତାକୁ ଦେଇଥିଲେ, ସେ ସବୁ ତା'ଠାରୁ ଅପହରଣ କରାଯାଇଛି ।

ବୈଜ୍ଞାନିକ, ପାରିବାରିକ, ସାମାଜିକ, ଆର୍ଥିକ, ରାଜନୈତିକ ସବୁକ୍ଷେତ୍ରରେ ନାରୀ ହାତରେ ଦିଗ ନିର୍ଦ୍ଧାରଣ କରିବାର ଦାୟିତ୍ୱ ରହିବା ଉଚିତ । ଏପରି ହେଲେ ଉପଲବ୍ଧ ସଂପଦର ସୁନ୍ଦର ସଦୁପଯୋଗ ସମ୍ଭବ ହେବ । ଆଜି ସବୁ କ୍ଷେତ୍ରରେ ବିକୃତିର ବିଭୀଷିକା ନଗ୍ନ ନୃତ୍ୟ କରୁଛି । ଏହାର ସ୍ଥୂଳ କାରଣ ଯାହା ହେଉନା କାହିଁକି, ସୂକ୍ଷ୍ମ କାରଣ ହେଉଛି- ନାରୀର ବର୍ଚ୍ଚସ୍ୱ ଓ ନେତୃତ୍ୱ କେଉଁଠି ହେଲେ ନାହିଁ, ସବୁଠାରେ ପୁରଷର ସ୍ୱେଚ୍ଛାଚାର କାମ କରୁଛି । ତା ପ୍ରକୃତିରେ କଠୋରତାର ଯେଉଁ ଭଲ ବା ମନ୍ଦ ତତ୍ତ୍ୱ ଅଧିକ ଥାଏ, ତାହା ଦ୍ୱାରା ସବୁ କିଛି ସଂଚାଳିତ ହେଉଛି । ଫଳସ୍ୱରୂପ ସବୁକ୍ଷେତ୍ରରେ ଉଦ୍ଧତ ପ୍ରକୃତିର ପ୍ରାବଲ୍ୟ ଦେଖାଦେଉଛି । ଜଳ ଅଭାବରେ ଅଗ୍ନି ସର୍ବନାଶୀ ଦାବାନଳର ବିକରାଳ ରୂପ ଧାରଣ କରି ପ୍ରଳୟ କରୁଛି । ବର୍ତ୍ତମାନ ନାରୀକୁ ଉପେକ୍ଷିତ ତିରସ୍କୃତ କରିବାର ଯେଉଁ କାମ ଚାଲିଛି, ତାହାର ପରିଣାମ ବ୍ୟାପକ ହାହାକାର ରୂପେ ଆମ ଆଗରେ ଉପସ୍ଥିତ ହୋଇଛି ।

ଏ ପରିସ୍ଥିତିକୁ ବଦଳାଇ ପରିଷ୍କାର କରିବା ସକାଶେ ଭୁଲ ସଂଶୋଧନ କରିବାକୁ ହେବ ଏବଂ ଉପଯୁକ୍ତ ଅବସ୍ଥା ଆଣିବା ପାଇଁ ପଛକୁ ଲେଉଟିବାକୁ ହେବ । ନାରୀର ବର୍ଚ୍ଚସ୍ୱ ପୁନଃ ସ୍ଥାପନ କରି ତା' ହାତରେ ନେତୃତ୍ୱ ସମର୍ପଣ କରାଯାଉ । ଏହା ସମୟର ଆହ୍ୱାନ ଏବଂ ପରିସ୍ଥିତିର ଦାବି । ଏହା ପୂରଣ ହେବା ସର୍ବାଦୌ ଆବଶ୍ୟକ । ନବ ଯୁଗ ନିର୍ମାଣ ପାଇଁ ଜନମାନସରେ ଯେଉଁ କୋମଳ ଭାବନାକୁ ନିର୍ମଳ କରିବା ଆବଶ୍ୟକ, ତାହା ନାରୀ ସୂତ୍ରରୁ ହିଁ ଉଦ୍‌ଭୂତ

ହେବ । ଯୁଦ୍ଧ, ସଂଘର୍ଷ, କଠୋରତା, ଚାତୁର୍ଯ୍ୟ, ବୁଦ୍ଧି କୌଶଳର ଚମତ୍କାର ପରିଣାମ ଦେଖା ସରିଲାଣି । ପୁରୁଷ ସଂପଦ ଉପାର୍ଜନ କରିଛି ସତ, କିନ୍ତୁ ଉଦ୍ଧତ ପ୍ରକୃତି ଯୋଗୁଁ ସେ ତାହାର ସଦ୍‌ବ୍ୟବହାର କରିପାରି ନାହିଁ । ସ୍ନେହ, ସଦ୍‌ଭାବ, ସୌଜନ୍ୟ ଓ ସଫଳତାର ପ୍ରତୀକ ହେଉଛି ନାରୀ । ତା'ର ବର୍ଚ୍ଚସ୍ୱ ମୃଦୁଳ ପରିଣତି ସଂଚାର କରିବାରେ ସମର୍ଥ । ତାହାକୁ ଉପେକ୍ଷିତ ଭାବରେ ରଖିଲେ ଯେ କୌଣସି ଦେଶରେ ଯେତେ ଉପାର୍ଜନ କରାଗଲେ ସୁଦ୍ଧା ସଦୁପଯୋଗ ଅଭାବରେ ତାହା ବିଶ୍ୱର କ୍ଷତି କରିବ । ନାରୀକୁ ଯଦି ପୁନଃ ତା ପଦରେ ଅଧିଷ୍ଠିତ କରାଯାଏ, ତେବେ ସବୁ ବ୍ୟବସ୍ଥିତ ହୋଇଯିବ । ଶକ୍ତିରୂପକ ଉନ୍ମତ୍ତ ହାତୀ ଉପରେ ସ୍ନେହର ଅଙ୍କୁଶ ରଖିଲେ, ଏହା ସମ୍ଭବ ହେବ । ଏହା ଭାବନାତ୍ମକ ନବନିର୍ମାଣର ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ସୂତ୍ର ଅଟେ । ନାରୀର ଅନୁନ୍ନତ ଅବସ୍ଥା ଦୂର ନ କଲେ, ତାକୁ ଅଗ୍ରଗାମୀ ନ କରାଇଲେ, ଗତି ନାହିଁ । ଏହି ପଦକ୍ଷେପ ଗ୍ରହଣ ନ କଲେ ଧରଣୀରେ ସ୍ୱର୍ଗର ଅବତରଣ କରିବା ଓ ମନୁଷ୍ୟଠାରେ ଦେବତ୍ୱ ଉତ୍ପନ୍ନ କରିବାର ଆମର ସ୍ୱପ୍ନ ସାକାର ହୋଇପାରିବ ନାହିଁ ।

କଟକଣା ଭିତରେ ଥିବା ନାରୀକୁ ସ୍ୱାଧୀନ ବାତାବରଣରେ ଶ୍ୱାସଗ୍ରହଣ କରିବାର ଅବସ୍ଥା ପର୍ଯ୍ୟନ୍ତ ନେବା ପାଇଁ ପୁରାତନପନ୍ଥୀ ପ୍ରଥା ବାଧା ଦେଉଛି । ଏହି ପ୍ରଥା ଯୋଗୁଁ ନାରୀକୁ ଅସ୍ପୃଶ୍ୟା, ବନ୍ଦୀ ଓ ଅବିଶ୍ୱସ୍ତ ଘୋଷଣା କରାଯାଉଛି କିମ୍ୱା ତାକୁ କାମିନୀର ଲାଞ୍ଛନାରେ କଳଙ୍କିତ କରିଦିଆଯାଉଛି । ଏହି ନୀଚ ପ୍ରଥା ଉପରେ ପ୍ରହାର ନ କଲେ, ତାହାର ମୂଳୋତ୍ପାଟନ ନ କଲେ ଅନ୍ଧ ପରମ୍ପରାର କୁଟୀଳ ବନ୍ଧନକୁ କାଟିବା ସମ୍ଭବ ହେବ ନାହିଁ, କିଛି କରିବା ପାଇଁ ନାରୀ ନିଜ କ୍ଷମତାର ପ୍ରୟୋଗ କରିବା ସମ୍ଭବ ହେବ ନାହିଁ । ଏହି ଉଦ୍ଦେଶ୍ୟରେ ଏତକ ଲେଖାଯାଉଛି । ନାରୀ କାମିନୀ ନୁହେଁ, ସେ କାହାକୁ ନରକ ଭିତରକୁ ଠେଲିଦିଏ ନାହିଁ, ବନ୍ଦୀ ହୋଇ ଦାସୀ ଭାବରେ ରହିବା ପାଇଁ ନାରୀର ଜୀବନ ଉଦ୍ଦିଷ୍ଟ ନୁହେଁ– ଏହା ପ୍ରମାଣ କରାଯାଉଛି । ନାରୀ ମନୁଷ୍ୟ ଜାତିର ଅର୍ଦ୍ଧ ଏକକ । ତା'ର ବ୍ୟକ୍ତିତ୍ୱ ଓ ବର୍ଚ୍ଚସ୍ୱ ନର ସହିତ ସମାନ ନୁହେଁ, ବରଂ ଅଧିକ ଉପଯୋଗୀ ଅଟେ । ସରଳ ଓ ସ୍ୱାଭାବିକ ଅବସ୍ଥାରେ ଜୀବନ ଯାପନ କରିବା ସକାଶେ ତାକୁ

ମୁକ୍ତି ଦିଆଗଲେ ବିଶ୍ୱର ବର୍ତ୍ତମାନ ବିପଦଜନକ ପରିସ୍ଥିତିରେ ଆଶ୍ଚର୍ଯ୍ୟଜନକ ପରିବର୍ତ୍ତନ ଆସିପାରେ । ଅନ୍ଧକାରଘେରା ମାନବ ଜାତିର ଭବିଷ୍ୟତ ଆଶାର ଆଲୋକରେ ଉଦ୍‌ଭାସିତ ହୋଇପାରେ ।

ପୁରୁଷମାନେ ମିଶି କୌଣସି କାମ କଲେ କିମ୍ବା ନାରୀମାନେ ପରସ୍ପର ଭିତରେ ସହଯୋଗ, ସାନ୍ନିଧ ବଢ଼ାଇଲେ, ବ୍ୟଭିଚାର ବା ଅନାଚାରର ଆଶଙ୍କା କରାଯାଇ ନ ଥାଏ । ଠିକ୍ ସେମିତି ପୁରୁଷ ଓ ନାରୀ ମିଳିମିଶି ରହିଲେ କୌଣସି ବିପଦ ବା କୁକଳ୍ପନାର ଅବକାଶ ରହି ନ ପାରେ । ତେଣୁ ଅଧା ମନୁଷ୍ୟ ସମାଜ ଉପରେ, ନାରୀ ଉପରେ ଅବାଞ୍ଛନୀୟ କଟକଣା ଆରୋପ କରିବା ଆବଶ୍ୟକ ନୁହେଁ । ଏ ବିଷୟ ସର୍ବସାଧାରଣଙ୍କୁ ବୁଝାଇଦେବା ଦରକାର । ପ୍ରାକୃତିକ ଭାବରେ ପୁରୁଷ ଓ ନାରୀର ମିଳାମିଶା କେତେ ଆବଶ୍ୟକ, ଉପଯୋଗୀ ଓ ଉଲ୍ଲାସପୂର୍ଣ୍ଣ, ତାହାର ପରିଚୟ ଆମେ ପାଇବୁ ସବୁବର୍ଗର ପୁରୁଷ ଓ ନାରୀ ପବିତ୍ର ଭାବରେ ବାସ କରୁଥିବା ପରିବାରରୁ । ପରିବାରରେ ପତି–ପତ୍ନୀ ଯୁଗଳ ବ୍ୟତୀତ କିଏ କାହାକୁ କୁଦୃଷ୍ଟିରେ ଦେଖେ ବା କୁଚେଷ୍ଟା କରେ ? ବିଶ୍ୱ ପରିବାରରେ ମଧ୍ୟ ଏପରି ପରିସ୍ଥିତି ସୃଷ୍ଟି କରାଯାଇପାରେ ଏବଂ ପୁରୁଷ ଓ ନାରୀ ସମାନ ଭାବରେ ନିଜର କର୍ତ୍ତବ୍ୟ ପାଳନ କରି, ସ୍ନେହ, ସଦ୍‌ଭାବ ସଂବର୍ଦ୍ଧନ କରି ଆତ୍ମିକ ଓ ଭୌତିକ ବିକାଶ କ୍ଷେତ୍ରରେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ସହଯୋଗ କରିପାରନ୍ତି । ଏପରି ପରିସ୍ଥିତିକୁ ନିମନ୍ତ୍ରଣ କରାଯାଇପାରେ ।

ଗର୍ହିତ ଦୃଷ୍ଟିକୋଣ ହିଁ ଅବରୋଧ ସୃଷ୍ଟି କରିଛି । ଏଥିପାଇଁ ଅଧିକ ଦୋଷୀ ହେଉଛନ୍ତି, କାଳାକାରବର୍ଗ । ସମାଜରେ ଚିନ୍ତାର ଦିଗକୁ ଏମାନେ ଭ୍ରମଯୁକ୍ତ କରିଦେଇଛନ୍ତି । ନାରୀକୁ ରମଣୀ, କାମିନୀ ଓ ବେଶ୍ୟା ରୂପେ ପ୍ରସ୍ତୁତ କରିବାରେ କଳାର ସମସ୍ତ ଉପାୟ ନିୟୋଜନ କରାଯାଇଛି । ତେଣୁ ଜନମାନସ ବିକୃତ ନ ହେବ କାହିଁକି ? କଳାକାର ଯେତେବେଳେ ନାରୀର ମର୍ମସ୍ଥଳକୁ ନିର୍ଲଜ, ନିର୍ବସନ କରିବା ସକାଶେ ଦୁଃଶାସନ ପରି କାମ କରେ, କବି ଯେତେବେଳେ ବାସନାକୁ ଉତ୍ତେଜିତ କରୁଥିବା ଭଳି ଛନ୍ଦ ଲେଖନ୍ତି, ଗାୟକ ଯେତେବେଳେ ଉତ୍ତେଜକ ଓ ଲମ୍ପଟତାପୂର୍ଣ୍ଣ ସ୍ୱର ଆଳାପ କରନ୍ତି, ସାହିତ୍ୟକାର ଯେତେବେଳେ କେବଳ

କୁତ୍ସା ହିଁ ରଚନା କରନ୍ତି, ସମ୍ବାଦ ସଂସ୍ଥା ଓ ଚଳଚ୍ଚିତ୍ର ପରି ବୈଜ୍ଞାନିକ ମାଧ୍ୟମ ଦ୍ୱାରା ଯେତେବେଳେ ସେହି କୁପ୍ରବୃତ୍ତିକୁ ଉତ୍ତେଜିତ କରିବା ପାଇଁ ଯୋଗଦାନ ମିଳେ, ସେତେବେଳେ ଜନମାନସକୁ ବିକୃତ ଓ ଭ୍ରାନ୍ତ କରିବା କ'ଣ କଠିନ ହୋଇପାରେ ? ବିକୃତିର ମୂଳ ସ୍ରୋତ ଏହି କଳାକୁ ବାଧା ଦେଇ ତାହାକୁ ବଦଳାଇବାକୁ ପଡ଼ିବ । ସ୍ନେହ ଓ ସଦ୍‌ଭାବର ଦେବୀ ସରସ୍ୱତୀଙ୍କ ପ୍ରତି କରାଯାଇଥିବା ଏହି ବର୍ବର ବ୍ୟବହାରକୁ ଯଦି ବଦଳାଇ ଦିଆଯାଇପାରେ ତେବେ ଜନମାନସରେ ନାରୀ ପ୍ରତି ସ୍ୱାଭାବିକ ସୌଜନ୍ୟକୁ ପୁନରାୟ ଜୀବନ୍ତ କରାଯାଇପାରେ ।

ଦିନ ଆଲୁଅରେ ଆଖିବନ୍ଦ କରି ନ ରହିବା ସକାଶେ ରକ୍ଷଣଶୀଳମାନଙ୍କୁ ଉପଦେଶ ଦିଆଯାଇପାରେ । ବିବେକର ଯୁଗ ଆଗତ । ଔଚିତ୍ୟର ପ୍ରତିଷ୍ଠା କରିବା ସକାଶେ ପ୍ରଖର ବୁଦ୍ଧିବାଦ ପ୍ରାତଃକାଳୀନ ଉଷା ପରି ଦିଗ୍‌ବଳୟ ଉପରେ ଦେଖା ଦେଉଛି । ତାହାକୁ ବାଧା ଦେବା ସମ୍ଭବ ନୁହେଁ । କଥା, ପୁରାଣର ଦୁହାଇ ଦେଇ, ପ୍ରଥା ପରମ୍ପରା ଆଳରେ ନାରୀକୁ ବ୍ୟଭିଚାରିଣୀ ଓ ଅବିଶ୍ୱସ୍ତ ମନେ କରି, ତାକୁ ଅଗଣିତ ବନ୍ଧନରେ ବାନ୍ଧି ରଖାଯାଇଛି । ଏ କଟକଣା ଆଉ ବେଶୀଦିନ ରହିପାରିବ ନାହିଁ । ବିବେକ ଓ ନ୍ୟାୟର ଆତ୍ମା ଛଟପଟ ହେଉଛି । ନାରୀ ପ୍ରତି କରାଯାଇଥିବା ବର୍ବରତାର ପରିସମାପ୍ତି କରିବା ପାଇଁ ତାହା ବ୍ୟାକୁଳ ହେଉଛି । ତେଣୁ ଏହା ହେବ ହିଁ ହେବ ।-କୌଣସି ବାଧା ତାହାକୁ ବେଶିଦିନ ଧରି ଅଟକାଇ ପାରିବ ନାହିଁ । ଭବିଷ୍ୟତରେ ସୁନିଶ୍ଚିତ ରୂପେ ନର ଓ ନାରୀ ପରସ୍ପରର ସହଯୋଗୀ ହୋଇ ସ୍ନେହ ସଦ୍‌ଭାବର ସହିତ ସ୍ୱାଭାବିକ ରୂପେ ଜୀବନଯାପନ କରିବେ ଏବଂ ଜଣେ ଅନ୍ୟ ଜଣକୁ ଆଶଙ୍କା କିମ୍ବା ଯୌନ ଆକର୍ଷଣର ଦୃଷ୍ଟିରେ ନ ଦେଖି ପୁଣ୍ୟ ସୌଜନ୍ୟର ଆଧାରରେ ନିର୍ମାଣ ଓ ନିର୍ବାହ କ୍ଷେତ୍ରରେ ପ୍ରଗତିଶୀଳ ପଦକ୍ଷେପ ଗ୍ରହଣ କରିବେ । ସମୟ ଥାଉ ଥାଉ ବଦଳିଯିବା ପୁରାତନପନ୍ଥୀଙ୍କ ପକ୍ଷରେ ଉଚିତ ହେବ । ଅନ୍ୟଥା ସମୟ ତାକୁ କେବଳ ଅବଜ୍ଞା କରିବ ନାହିଁ, ତାର ଦୁର୍ଗତି ଘଟାଇବ । ଉଦୀୟମାନ ସୂର୍ଯ୍ୟ ଅଟକି ଯିବ ନାହିଁ । ପେଚା, ବାଦୁଡ଼ି ଓ ବଣବିରାଡ଼ି ମୁହଁ ଲୁଚାଇ କୌଣସି ଅନ୍ଧାର ଜାଗାରେ ବିଶ୍ରାମ କରିପାରନ୍ତି ।

ମନର ସଂକୀର୍ଣ୍ଣତା, ନୀଚ ଭାବନା ଓ କଳୁଷକୁ ଭୟ କରିବା ଲାଗି ତଥାକଥିତ ସନ୍ଥ, ମହାତ୍ମାଙ୍କୁ କୁହାଯାଇପାରେ । ତାହାକୁ ସେମାନେ ଭବବନ୍ଧନ ମନେ କରନ୍ତୁ । ତାହା ହିଁ ନରକର ଗର୍ତ୍ତ । ଯେଉଁ ନାରୀର ଗର୍ଭରୁ ସେମାନେ ସ୍ୱୟଂ ଜନ୍ମ ନେଇଛନ୍ତି, ଯାହାର ସ୍ତନ୍ୟପାନ କରି ସେମାନେ ଜୀବନ ଧାରଣ କରିଛନ୍ତି, ସେହି ନାରୀକୁ ଲାଞ୍ଛନ କରି ସେମାନେ ମାନବ ଜାତିକୁ ଭର୍ତ୍ସନା ନ କରନ୍ତୁ । ଆମର ଜିହ୍ୱା କନ୍ୟାକୁ ଲାଞ୍ଛିତା ନ କରୁ, ଭଗିନୀକୁ ଅଭିଶାପ ନ ଦେଉ । ନାରୀ ନରକର ଦ୍ୱାର– ଏହି କୁକଳ୍ପନା ଅଧ୍ୟାତ୍ମର କୌଣସି ଆଦର୍ଶ ବା ସିଦ୍ଧାନ୍ତ ସହିତ ମେଳ ଖାଏ ନାହିଁ । ଏପରି ହୋଇଥିଲେ ଆତ୍ମମାନଙ୍କର ଇଷ୍ଟଦେବ ରାମ, କୃଷ୍ଣ, ଶିବ ଇତ୍ୟାଦି ନାରୀକୁ ସମୀପବର୍ତ୍ତୀ ହେବା ପାଇଁ ଦେଇ ନ ଥାନ୍ତେ । ଋଷି ଆଶ୍ରମରେ ଋଷିପତ୍ନି ରହି ନ ଥାନ୍ତେ । ସରସ୍ୱତୀ, ଲକ୍ଷ୍ମୀ, କାଳୀ ଇତ୍ୟାଦି ଦେବୀଙ୍କ ମୁଖଦର୍ଶନ ପାପରୂପେ ପରିଗଣିତ ହୁଅନ୍ତା । ନିରର୍ଥକ ଛଳନା ନ କରିବା ହିଁ ଭଲ । ଅନ୍ତରାତ୍ମା, ପ୍ରଜ୍ଞା, ଭକ୍ତି, ସାଧନା, ମୁକ୍ତି, ସିଦ୍ଧି ଏସବୁ ସ୍ତ୍ରୀ ଲିଙ୍ଗବାଚକ ଶବ୍ଦ । ନାରୀ ଯଦି ନରକର ଦ୍ୱାର ତଥା ସ୍ତ୍ରୀ ଲିଙ୍ଗ, ତେବେ ଏ ଶବ୍ଦଗୁଡ଼ିକ ସହିତ ସଂଯୁକ୍ତ ବିଭୂତିଗୁଡ଼ିକୁ ମଧ୍ୟ ବହିଷ୍କାର କରିଦେବା ଉଚିତ । ଅଧ୍ୟାତ୍ମବାଦ ନାମରେ ନାନାଦି ଭ୍ରମରେ ଅନ୍ୟକୁ ବାଟବଣା କରିବା ଅପେକ୍ଷା, ନିଜେ ଯାଦୁଘରର କୋଠରିରେ ବନ୍ଦ ହୋଇ ରହିବା ଭଲ ହେବ ।

ସର୍ବସାଧାରଣ ଗୋଟିଏ ତଥ୍ୟ ସହିତ ପରିଚିତ ହେବା ଆବଶ୍ୟକ । ପୁରୁଷ ଓ ନାରୀର ଘନିଷ୍ଠ ସହଯୋଗ ଯଦି ପବିତ୍ର ପୃଷ୍ଠଭୂମିରେ ବିକଶିତ କରାଯାଏ, ତେବେ ଏହାଦ୍ୱାରା କାହାରି କିଛି କ୍ଷତି ହେବ ନାହିଁ । ବରଂ ସବୁ ଦିଗରୁ ସମସ୍ତଙ୍କର ଉପକାର ହେବ । ନାରୀ ବିଦ୍ୟୁତ୍ ନୁହେଁ କି ନିଆଁ ନୁହେଁ । ତାକୁ ଛୁଇଁଲେ ବା ଦେଖିଲେ କୌଣସି ଅନର୍ଥର ଆଶଙ୍କା ନାହିଁ । ନାରୀକୁ ଅଲଗା କରି ରଖିବାର କୌଣସି ଆବଶ୍ୟକତା ନାହିଁ । ମଣିଷକୁ ମଣିଷର ଅଧିକାର ମିଳିବା ଉଚିତ । ବିଶ୍ୱରେ ଅନେକ ଦିନରୁ ରାଜନୈତିକ ସ୍ୱାଧୀନତାର ଦାବି ପ୍ରବଳ ହୋଇ ଉଠିଛି । ତାହା ପରମ୍ପରାଗତ ସିଂହାସନ ଅଧିକାରର ମୂଳୋତ୍ପାଟନ କରିଦେଇଛି । ଏହି ପ୍ରବାହ ଓ ପରିବର୍ତ୍ତନ କେବଳ ରାଜନୈତିକ କ୍ଷେତ୍ରରେ ହିଁ

ସୀମାବଦ୍ଧ ହୋଇ ରହିବ ନାହିଁ । ମନୁଷ୍ୟକୁ ସମାନ ସ୍ୱାଧୀନତା ଦେବା ପରେ ହିଁ ତାହାର ଗତି ବନ୍ଦ ହେବ । ଦାସପ୍ରଥା ଶେଷ ହୋଇଯାଇଛି । ଏବେ ଆଉ ଦାସ ଦାସୀଙ୍କ କିଣା ବିକା ହେଉ ନାହିଁ । ବର୍ଗଭେଦ ଓ ରଙ୍ଗଭେଦ ନାମରେ ଅସମାନତାର ଯେଉଁ କୁପ୍ରଥା ଅଛି, ତା ବିରୁଦ୍ଧରେ ବିଦ୍ରୋହ ପ୍ରବଳରୁ ପ୍ରବଳତର ହୋଇ ଉଠୁଛି । ମାନସିକ ସମ୍ମାନ ଓ ଅଧିକାରରୁ ବଞ୍ଚିତ ହୋଇ ଆଉ କେହି ରହିବେ ନାହିଁ । ସେ ଦିନ ଖୁବ୍ ନିକଟ ହୋଇଆସୁଛି । ଜନ୍ମ, ଜାତି, ବର୍ଣ୍ଣ, ବଂଶ, ରଙ୍ଗ ଇତ୍ୟାଦି ନାମରେ ପ୍ରଚଳିତ ଅସମାନତା ଆଉ ବେଶୀକାଳ ବଞ୍ଚି ରହିପାରିବ ନାହିଁ । ତାହା ନିଜ ମୃତ୍ୟୁର ଦିନ ଗଣୁଛି । ନର ଓ ନାରୀ ଭିତରେ ଥିବା ଭେଦଭାବ ଏବେ ସେହି ପରିଧି ଭିତରେ ଆସୁଛି । ନାରୀର ପରାଧୀନତା, ମନୁଷ୍ୟ ଜାତିର ଅର୍ଦ୍ଧେକ, ଅର୍ଦ୍ଧଜନ ସଂଖ୍ୟାର ପରାଧୀନତା ଅଟେ । ତାହା ପୂର୍ବଭଳି ଅବସ୍ଥାରେ ରହିବା ଆଉ ସମ୍ଭବ ନୁହେଁ । ସ୍ୱାଧୀନତାର ପ୍ରବାହ ନାରୀକୁ ମଧ୍ୟ ଏହି ଅନୀତିମୂଳକ ବନ୍ଧନରୁ ନିଶ୍ଚୟ ମୁକ୍ତି ଦେବ । ଗାଡ଼ିର ଦୁଇ ଚକ ପରି, ଶରୀରର ଦୁଇ ବାହୁ ପରି ନର ଓ ନାରୀ ପରସ୍ପର ମଧ୍ୟରେ ସହଯୋଗ କରିବାର ଦେଖାଯିବ । ସେଦିନ ଆଉ ଦୂରରେ ନାହିଁ । ଆଜି ନୁହେଁ ତ କାଲି ସମୟର ପ୍ରବାହ ଏହି ପରିସ୍ଥିତି ସୃଷ୍ଟି କରିବ । ସମୟ ଥାଉ ଥାଉ ଆମେ ବଦଳିଯିବା ବରଂ ଭଲ ହେବ । ନ୍ୟାୟ ଓ ବିବେକର ଦିବ୍ୟ କିରଣ ସହିତ ଉଦୟ ହେଉଥିବା ସେହି ଉଷାର ଅଭ୍ୟର୍ଥନା କରି ନିଜ ସଦ୍‌ଭାବର ପରିଚୟ ଦେବା ସକାଶେ ଆମେ ଆଗକୁ ଚାଲିବା ଭଲ ହେବ ।

ଭାବି ବିଶ୍ୱର ସମଗ୍ର ନେତୃତ୍ୱ ନାରୀ ଉପରେ ହିଁ ନ୍ୟସ୍ତ କରାଯିବ । ତେଣୁ ନବନିର୍ମାଣ ପ୍ରକ୍ରିୟାରେ ଏ ଦିଗରେ ଅଧିକ ଉତ୍ସୁକତା ଦେଖାଦେଇଛି । ଅତୀତରେ ଆକ୍ରମଣ, ଆତଙ୍କ, ଶୋଷଣ ଓ ଯୁଦ୍ଧ ଲିପ୍‌ସା ଉଦ୍ଦେଶ୍ୟରେ ରାଜସତ୍ତାର ପ୍ରୟୋଗ କରାଯାଉଥିଲା । ପୁରୁଷ ନେତୃତ୍ୱର କୁପରିଣାମରେ ଇତିହାସର ପୃଷ୍ଠା ପରିପୂର୍ଣ୍ଣ ହୋଇଯାଇଛି । ଏବେ ନାରୀ ହାତରେ ରାଜସତ୍ତା ସମର୍ପଣ କରାଯିବ । ତାହାହେଲେ ନାରୀ ନିଜସ୍ୱ କରୁଣା ଓ ମୃଦୁଳ ସ୍ୱଭାବ ଅନୁରୂପ ରାଜସତ୍ତାର ଅତ୍ୟାଚାରରେ ଆକୁଳ ମାନବର ଅଶ୍ରୁ ପୋଛି ଦେଇପାରିବ । ଶିକ୍ଷାରୁ ଆରମ୍ଭ କରି ନ୍ୟାୟ ପର୍ଯ୍ୟନ୍ତ,

ବାଣିଜ୍ୟରୁ ଆରମ୍ଭ କରି ଧର୍ମଧାରଣା ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ନାରୀର ନେତୃତ୍ୱ ରହିବ । ଏପରି ହେଲେ ଏ ଦୁନିଆ ସତରେ ବଦଳିଯିବ, କଳାର ସମଗ୍ର ସତ୍ର ଯେତେବେଳେ ନାରୀ ହାତରେ ଅର୍ପଣ କରାଯିବ, ସେତେବେଳେ ସେହି ଦେବ ମଞ୍ଚରୁ କେବଳ ଶାଳୀନତାର ଦିବ୍ୟଧାରା ପ୍ରବାହିତ ହେବ ଏବଂ ସେହି ପୁଣ୍ୟତୋୟା ଜାହ୍ନବୀରେ ଅବଗାହନ କରି ଜନମାନସ ନିଜର ସବୁ କଳୁଷ ପ୍ରକ୍ଷାଳନ କରି ନିର୍ମଳ ଓ ନିଷ୍ପାପ ହୋଇଯିବ ।

ବହୁ କାଳରୁ ନରର ନେତୃତ୍ୱ ରହିଛି । ତା'ର କରାମତି ଭଲ ରୂପେ ଦେଖାଯାଇଛି ଓ ପରଖ କରାଯାଇଛି । ପୁରୁଷ ଏବେ ନିଜର ସମ୍ମାନ ରକ୍ଷା କରି ପଛକୁ ଫେରିଯିବା ଭଲ ହେବ । ଅବସର ଭତ୍ତା ନେଇ ଅତି କମ୍‌ରେ ନେତୃତ୍ୱର ଲାଳସା ପରିତ୍ୟାଗ କରିବା ପୁରୁଷ ପକ୍ଷରେ ଉଚିତ ହେବ । କରିବାକୁ ଇଚ୍ଛା ଥିଲେ ଅନେକ କାମ ଅଛି । ସେଥିପାଇଁ କେହି ପୁରୁଷକୁ ବାଧା ଦେବ ନାହିଁ । ଏଠାରେ ପ୍ରଶ୍ନ ହେଉଛି ନେତୃତ୍ୱର । ବର୍ତ୍ତମାନ ପରିବର୍ତ୍ତନର ସମୟ ଆସନ୍ନ । ଗ୍ରୀଷ୍ମର ଉତ୍ତାପ ଅନେକ ଦିନ ଉତ୍ତପ୍ତ କରିସାରିଛି । ଏବେ ବର୍ଷାର ଶାନ୍ତି ଓ ଶୀତଳତାର ଧାରା ଆସିବା ଉଚିତ । ସର୍ବନାଶର ଯେଉଁ ବିଷମ ବିଭୀଷିକାରେ ମନୁଷ୍ୟ ଜାତି ପଡ଼ିଯାଇଛି, ନେତୃତ୍ୱ ପରିବର୍ତ୍ତନ ନ କଲେ ସେଥିରୁ ପରିତ୍ରାଣ ପାଇବା ସମ୍ଭବ ନୁହେଁ । ନାରୀର କରୁଣା ଦ୍ୱାରା ହିଁ ନରର ନିରନ୍ତର ନିଷ୍ଠୁରତାର ପରିମାର୍ଜନ ହୋଇପାରେ । ତାକୁ ଦୃଢ଼ ଓ ସମର୍ଥ କରିବା ସକାଶେ ଏହି ପୁସ୍ତକରେ ଲିଖିତ ସମସ୍ତ ବୌଦ୍ଧିକ ପ୍ରକ୍ରିୟା ଅନୁସରଣ କରିବାକୁ ହେବ ।

ପୁରୁଷ ଓ ନାରୀର ମିଳନ ଫଳରେ କେବଳ ଗୋଟିଏ ବିପଦ ଆସିପାରେ । ବର୍ତ୍ତମାନର ବିକୃତ ବାସନାର ତାଣ୍ଡବ ନୃତ୍ୟକୁ ବାଧା ନ ଦେଲେ ପାଶ୍ଚାତ୍ୟ ଦେଶମାନଙ୍କ ପରି ସ୍ୱଚ୍ଛନ୍ଦ ବାତାବରଣରେ ବଢୁଥିବା ଯୌନାଚାର ପରିବ୍ୟାପ୍ତ ହୋଇଯିବ ଏବଂ ତାହା ମଧ୍ୟ କିଛି ଅଳ୍ପ ଘାତକ ହେବ ନାହିଁ । ଏହି ତଥ୍ୟ ପ୍ରତି ନଜର ଦେଇ ଯେଉଁଠି ନାରୀର ସ୍ୱାଧୀନତା ସକାଶେ ଆମେ ଚେଷ୍ଟା କରିବା, ସେଠାରେ କାମୁକତା ଦିଗରେ ଅଗ୍ରସର ହେଉଥିବା ମନୋବୃତ୍ତିକୁ ନିର୍ମଳ କରିବା ଉଦ୍ଦେଶ୍ୟରେ କେତେକ ପଦକ୍ଷେପ ଗ୍ରହଣ କରିବାକୁ ହେବ । ଏ ସନ୍ଦର୍ଭରେ

ନାରୀର ସୌମ୍ୟ ଓ ସ୍ୱାଭାବିକ ଚିତ୍ରଣ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କଳାର ବିଦ୍ରୂପକୁ ଅଭିଶାପ ଦେଲେ କାମ ଚଳିବ ନାହିଁ । ଅନୁପଯୁକ୍ତ ହାତରୁ ତାହାକୁ ଛଡ଼ାଇ ନେବା ଶାସକ ସତ୍ତା ପକ୍ଷରେ ସମ୍ଭବ । କିନ୍ତୁ ପ୍ରଜାତନ୍ତ୍ର ପଦ୍ଧତି ଯୋଗୁଁ ଆମେ ସାଧାରଣ ସ୍ତରରେ ଥାଇ କୌଣସି ଉଲ୍ଲେଖନୀୟ ପଦକ୍ଷେପ ଗ୍ରହଣ କରିପାରିବୁ ନାହିଁ । ଆମେ କେବଳ ଏତିକି କରିପାରିବୁ ଯେ ଅନ୍ୟ ଏକ କଳାମଞ୍ଚ ନିର୍ମାଣ କରି ତା ମାଧ୍ୟମରେ ନାରୀର ପବିତ୍ରତା ପ୍ରତିପାଦନ କରି ଜନମାନସରେ ଉପଯୁକ୍ତ ଧାରଣା ସୃଷ୍ଟି କରିପାରିବୁ । ନାରୀ ବାସନା ପାଇଁ ନୁହେଁ, ବରଂ ପବିତ୍ରତାର ପୁଣ୍ୟ ସ୍ଫୁରଣ ନିମନ୍ତେ ଉଦ୍ଦିଷ୍ଟ । କଳାମଞ୍ଚ ଏହା ସବୁ ସହଜରେ କରିପାରେ । ସାହିତ୍ୟ ସୃଷ୍ଟି ଏହି ଉଦ୍ଦେଶ୍ୟରେ କରାଗଲେ, କବିତା ସେହିପରି ଲେଖାଗଲେ, ଏହି ପ୍ରୟୋଜନ ପୂରଣ ନିମନ୍ତେ ଚିତ୍ର ଅଙ୍କନ କରାଗଲେ, ଗାୟକ ଓ ସମ୍ବାଦସଂସ୍ଥା ଏହି ଆଦର୍ଶ ଅନୁସରଣ କଲେ, ଏପରି ବିଷୟକୁ ନେଇ ଚଳଚ୍ଚିତ୍ର ନିର୍ମାଣ କରାଗଲେ, ନାରୀର ସ୍ୱାଭାବିକ, ସରଳ, ସୌମ୍ୟ ସ୍ୱରୂପ ଜନମାନସରେ ପ୍ରତିଷ୍ଠିତ ହୋଇ ନ ପାରିବାର କୌଣସି କାରଣ ନାହିଁ । ଏପରି କରାଗଲେ ପାଶ୍ଚାତ୍ୟ ଦେଶଗୁଡ଼ିକ ଭୋଗିବା ପରି ବିପଦ ଆସିବ ନାହିଁ । ସେମାନେ ନାରୀକୁ ସ୍ୱାଧୀନତା ଦେଲେ ସତ । କିନ୍ତୁ ବିକାରର ମୂଳୋତ୍ପାଟନ ଦିଗରେ କିଛି କରିବା ତ ଦୂରର କଥା, ଓଲଟା ତାହାକୁ ଉତ୍ତେଜିତ କରୁବାରେ ଲାଗିଗଲେ । ତେଣୁ ସେମାନେ ତାହାର କୁପରିଣାମ ଭୋଗ କରିଛନ୍ତି । ସେମିତି ଭୁଲ କରିବା ଆମ ପକ୍ଷରେ ଉଚିତ ହେବ ନାହିଁ । ଦୃଷ୍ଟିକୋଣକୁ ନିର୍ମଳ କରିବାର ଚେଷ୍ଟାକୁ ନାରୀ ସ୍ୱାଧୀନତା ଆନ୍ଦୋଳନ ସହିତ ସମନ୍ୱୟ କରି ରଖିଲେ ବିକୃତି ଉତ୍ପତ୍ତି ହେବାର ଆଶଙ୍କା ରହିବ ନାହିଁ ।

ଆଧ୍ୟାତ୍ମିକ କାମ ବିଜ୍ଞାନର ଉପଯୋଗୀ ତଥ୍ୟ ବୁଝାଇ ଦେବାକୁ ହେବ । ଏହି ତଥ୍ୟର ଆଧାର ଉପରେ ଯୌନ ସଂପର୍କ ଓ କାମକ୍ରୀଡ଼ାର ଉପଯୋଗିତା ତଥା ବିଭୀଷିକା ହୃଦୟଙ୍ଗମ କରିହେବ । ତାହାର ସଦୁପଯୋଗ ଜନିତ ବିପଦରୁ ରକ୍ଷା ପାଇବା ପାଇଁ ଓ ସଦୁପଯୋଗରୁ ଉପକୃତ ହେବା ପାଇଁ ସମୁଚିତ ଜ୍ଞାନ ସର୍ବସାଧାରଣଙ୍କୁ ଉପଲବ୍ଧ ହୋଇପାରିବ ।

# ସଦାଚାରପୂର୍ଣ୍ଣ ଆତ୍ମୀୟତା ହିଁ ପ୍ରକୃତିର ପ୍ରେରଣା

ଆଜିକାଲି ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାରେ ପ୍ରଭାବିତ ଲୋକମାନେ ଯୌନସଦାଚାର ପାଳନ କରିବାକୁ ଦ୍ୱିଧା ପ୍ରକାଶ କରିଥାନ୍ତି । ମନୁଷ୍ୟ ପ୍ରକୃତିଠାରୁ ପ୍ରେରଣା ଗ୍ରହଣ କରିଛି ବୋଲି ସେମାନେ ତର୍କ ପ୍ରସ୍ତୁତ କରିଛନ୍ତି । ପ୍ରକୃତିରେ ପଶୁଙ୍କ ଠାରେ କାମାଚାରର କୌଣସି ମର୍ଯ୍ୟାଦା ନାହିଁ, ତେଣୁ ମନୁଷ୍ୟ ସେ ମର୍ଯ୍ୟାଦା ପାଳନ ନ କଲେ କୌଣସି କ୍ଷତି ନାହିଁ । ଏପରି କହୁଥିବା ଲୋକମାନେ ପ୍ରକୃତରେ ପ୍ରକୃତିକୁ ଗଭୀର ଭାବରେ ଅଧ୍ୟୟନ କରିନାହାନ୍ତି । ଅଳ୍ପ କେତେକ ତୁଚ୍ଛ ଓ ନଗଣ୍ୟ ଜାତିର ମଶା, ମାଛି, କୁକୁର, ବିରାଡ଼ିଙ୍କ କଥା ଅଲଗା । ଅନ୍ୟଥା ପୃଥିବୀରେ ଯେତେ ଶକ୍ତିଶାଳୀ ଓ ପ୍ରସନ୍ନତାପ୍ରିୟ ଜୀବ ଅଛନ୍ତି, ସେମାନଙ୍କ ଦାମ୍ପତ୍ୟଜୀବନ ଅତ୍ୟନ୍ତ ଆତ୍ମୀୟତା, ଘନିଷ୍ଠତା ଓ ସଦାଚାରପୂର୍ଣ୍ଣ ଅଟେ ।

ଅନ୍ୟ ପ୍ରାଣୀଙ୍କ ମଧ୍ୟରେ କେବଳ ବଂଶବୃଦ୍ଧି ଉଦ୍ଦେଶ୍ୟରେ ହିଁ କାମବାସନାର ଉପଯୋଗ ହୋଇଥାଏ । କେବଳ ଏତିକି ନୁହେଁ, ବଂଶବୃଦ୍ଧି ପରେ ସେମାନେ ନିଜର ଦାୟିତ୍ୱ ବିଷୟରେ ବୁଝିଥାନ୍ତି । ତାହା ପାଳନ କରିବା ସକାଶେ ସେମାନେ ଆଗରୁ ବ୍ୟବସ୍ଥା କରିଥାନ୍ତି । ଜୀବଜଗତର କେତେକ ଉଦାହରଣରୁ ଏହା ସ୍ପଷ୍ଟ ହୋଇଥାଏ ।

''ଷ୍ଟିକଲ ବ୍ୟାଙ୍କ'' ନାମକ ଏକ ଛୋଟ ଜାତିର ମାଛ, ଏହା ସମୁଦ୍ରରେ ବାସ କରେ । ପ୍ରସିଦ୍ଧ ଜୀବ ବିଜ୍ଞାନୀ ଡାଃ ଲର୍ଡ ଅତ୍ୟନ୍ତ ସୂକ୍ଷ୍ମ ଭାବରେ ସେ ମାଛର ପ୍ରକୃତି ଓ କ୍ରିୟା ବିଷୟରେ ଅଧ୍ୟୟନ କରିଥିଲେ । ଭାଙ୍କୋଭର, ଆୟାରଲାଣ୍ଡରେ ସେ ମାସ ମାସ ଧରି ରହି ଏହି ମାଛର ଜୀବନ ପଦ୍ଧତି ବିଷୟରେ ଗବେଷଣା କଲେ । ସେ କହିଛନ୍ତି– ''ମନୁଷ୍ୟ ଇଚ୍ଛା କଲେ ନିଜ ପାରିବାରିକ ଜୀବନକୁ ସୁଖମୟ ଓ ସୁଦୃଢ଼ କରିବାର ମହତ୍ତ୍ୱପୂର୍ଣ୍ଣ ଶିକ୍ଷା ଏ ମାଛଠାରୁ ଗ୍ରହଣ କରିପାରେ ।''

ପୁରୁଷ ଷ୍ଟିକଲ ମାଛ ଘରକରଣା ପାଇଁ ବହୁ ପୂର୍ବରୁ ପ୍ରସ୍ତୁତି ଆରମ୍ଭ କରିଦିଏ । ସର୍ବପ୍ରଥମେ ସେ ସମୁଦ୍ରରେ ନାନା ସ୍ଥାନରେ ବୁଲି ଜଳର ସ୍ରୋତ

ଅତି ତୀବ୍ର ବା ମନ୍ଦ ନ ଥିବା ସ୍ଥାନଟିଏ ଖୋଜିନିଏ । ଶାନ୍ତ ତଥା ଅନ୍ୟ କାହାର ଅଧିକ ଗମନାଗମନ ନଥିବା ସ୍ଥାନଟି ସେ ପସନ୍ଦ କରେ ।

ପ୍ରାଚୀନ କାଳରେ ଜୀବନ ପ୍ରଣାଳୀ ଏବଂ ଶିକ୍ଷା ପଦ୍ଧତି ଉପରେ ଦୃଷ୍ଟି ପକାଇଲେ ଜଣାପଡ଼େ ଯେ ତତ୍‌କାଳୀନ ଋଷିମୁନିଗଣ ଏବଂ ସାମାଜିକ ମାର୍ଗଦର୍ଶକ ଆଚାର୍ଯ୍ୟଗଣ ଦାମ୍ପତ୍ୟ ଓ ଗୃହସ୍ଥ ଜୀବନକୁ ଏକ ମହତ୍ତ୍ୱପୂର୍ଣ୍ଣ ଯୋଗ ସାଧନା ବୋଲି ଭଲ ଭାବରେ ବୁଝିଥିଲେ । ସେଥିପାଇଁ ଆବଶ୍ୟକୀୟ ପ୍ରସ୍ତୁତି ନ ଥିଲେ କେବଳ ଲୋକଙ୍କର ବ୍ୟକ୍ତିଗତ ଜୀବନ ନୁହେଁ, ପାରିବାରିକ ଓ ସାମାଜିକ ବ୍ୟବସ୍ଥା ମଧ୍ୟ ଅସ୍ତବ୍ୟସ୍ତ ହୋଇପଡ଼େ । ଜୀବନର ପ୍ରଥମ ୨୫ ବର୍ଷ ବ୍ରହ୍ମଚର୍ଯ୍ୟ ଧାରଣ କରି ରହି ବିଦ୍ୟା ଅଧ୍ୟୟନ କରିବାର ବ୍ୟବସ୍ଥା ଥିଲା । ପାଠ୍ୟକ୍ରମରେ ଧାର୍ମିକ, ଆଧ୍ୟାତ୍ମିକ, ନୈତିକ, ସାଂସ୍କୃତିକ ବିଷୟର ସମାବେଶ ପଛରେ ଯେଉଁ ଉଦ୍ଦେଶ୍ୟ ଓ ରହସ୍ୟ ଥିଲା, ତାହା ହେଉଛି– ଭବିଷ୍ୟତର ଜୀବନ ଓ ଦାୟିତ୍ୱ ବହନ କରିବା ନିମନ୍ତେ ଶାରୀରିକ, ମାନସିକ, ବୌଦ୍ଧିକ କିମ୍ବା ଚରିତ୍ରଗତ କୌଣସି ତ୍ରୁଟି ନ ରହିବା । ପୂର୍ଣ୍ଣ ପ୍ରସ୍ତୁତିର ଫଳସ୍ୱରୂପ ହିଁ ସେ କାଳର ଦାମ୍ପତ୍ୟ ଜୀବନ, ପାରିବାରିକ ତଥା ସାମାଜିକ ସଙ୍ଗଠନ ପ୍ରେମ, ମୈତ୍ରୀ, କରୁଣା, ଦୟା, କ୍ଷମା ଆଦି ସୁଖ ସନ୍ତୋଷ ଓ ସ୍ୱର୍ଗୀୟ ପରିସ୍ଥିତିରେ ପରିପୂର୍ଣ୍ଣ ହୋଇ ରହିଥିଲା । ଆନନ୍ଦ ଉଦ୍‌ବେଳିତ ହେଉଥିଲା ସେତେବେଳେ । କିନ୍ତୁ ଆଜି ଶିକ୍ଷାର ଛାଞ୍ଚରେ, ଆମର ରୀତି ନୀତି ଓ ଜୀବନ ପଦ୍ଧତିରେ ସେ ପ୍ରସ୍ତୁତି ପାଇଁ କୌଣସି ସ୍ଥାନ ନାହିଁ । ତେଣୁ ଆମର ପାରିବାରିକ ଜୀବନ ମଧ୍ୟ ଅସନ୍ତୋଷମୟ ଓ ଅସ୍ତବ୍ୟସ୍ତ ପର୍ଯ୍ୟାୟରେ ପହଞ୍ଚିଗଲା ।

ମଣିଷ ଭୁଲ୍ କରିପାରେ । କିନ୍ତୁ ସୃଷ୍ଟିର ଶହଶହ ଜୀବଜନ୍ତୁଙ୍କ ପରି ଷ୍ଟିକଲ ବ୍ୟାଙ୍କ ମାଛ ଏ ଭୁଲ କେବେ କରେ ନାହିଁ । ପ୍ରଥମରୁ ପ୍ରସ୍ତୁତ କରିଥିବା ଦାମ୍ପତ୍ୟ ଜୀବନରେ ଯେଉଁ ଆନନ୍ଦ ରହିଛି, ତରବରରେ ଘରକରଣା କଲେ ସେ ଆନନ୍ଦ ମିଳି ନଥାଏ । ନିଜର ଜୀବନ ପଦ୍ଧତି ଦ୍ୱାରା ଏହି ବିଷୟ ମନୁଷ୍ୟକୁ ଶିଖାଇବା ଓ ବୁଝାଇବା ପାଇଁ ସତେ ଯେମିତି ଏ ମାଛ ପ୍ରକୃତିଠାରୁ ପ୍ରେରଣା ଲାଭ କରିଛି । ସମୁଚିତ ବ୍ୟବସ୍ଥା କରିବା ପତିଙ୍କ ଦାୟିତ୍ୱ । ନିଜର ପ୍ରସ୍ତୁତିରେ

କୌଣସି ତ୍ରୁଟି ନ ଥିଲେ ପତ୍ନୀ ତରଫରୁ ପୂର୍ଣ୍ଣ ସହଯୋଗ ଓ ସମର୍ଥନ ଯେ ନ ମିଳିବ, ଏମିତି କିଛି କଥା ନାହିଁ । ଏହି ମାଛ ପରି ପ୍ରସ୍ତୁତି କରିପାରିଥିବା ପୁରୁଷ ଦାମ୍ପତ୍ୟ ଜୀବନରୁ ପ୍ରଚୁର ଆନନ୍ଦ ଲାଭ କରିଥାନ୍ତି । ସେମାନେ ସ୍ୱର୍ଗ ବା ମୁକ୍ତିର କଳ୍ପନା କରି ନଥାନ୍ତି । ସେମାନେ ଏଇ ଜୀବନରେ ସ୍ୱର୍ଗ ଓ ସୌଭାଗ୍ୟ ଲାଭ କରିଥାନ୍ତି ।

ତତ୍ପରତା ସହିତ ଖୋଜାଖୋଜି କରି ଯେତେବେଳେ ଉପଯୁକ୍ତ ସ୍ଥାନ ମିଳିଯାଏ, ସେତେବେଳେ ଷ୍ଟିକଲ ବ୍ୟାଙ୍କ ମାଛ ନିଜ ପତ୍ନୀ ପାଇଁ ସୁନ୍ଦର ଘରଟିଏ ତିଆରି କରିବାରେ ଲାଗିପଡ଼େ । ଏଥିପାଇଁ ବିଚରା ମାଛକୁ କେତେ ପରିଶ୍ରମ କରିବାକୁ ପଡ଼େ । ନିଜ ବାପା ମା'ଙ୍କ ମୁଣ୍ଡରେ ବୋଝ ହୋଇ ବିବାହର କାମନା କରୁଥିବା ଯୁବକଗଣ ସେ କଥା ବୁଝିବେ କିପରି ? ଷ୍ଟିକଲ ବ୍ୟାଙ୍କ ପାଣିରେ ଭାସୁଥିବା ଛୋଟ ଛୋଟ ବୁଦାର ନରମ କାଠ ଓ ଚେର ଏକତ୍ର କରେ ଏବଂ ସେଗୁଡ଼ିକ ତାହାର ନିର୍ବାଚିତ ସ୍ଥାନକୁ ନେଇଯାଏ । ବାହା ହେବାର ସଉକ ରଖିଥିବା ଷ୍ଟିକଲକୁ ପ୍ରଥମରୁ ଖୁବ୍ ପରିଶ୍ରମ କରିବାକୁ ହୁଏ । ନିଜ ଶରୀରରୁ ସେ ଏକପ୍ରକାର ଅଠାଳିଆ ଜିନିଷ ବାହାର କରେ ଏବଂ ତାହା ଦ୍ୱାରା ସେ ପୂର୍ବରୁ ଏକାଠି କରିଥିବା ସବୁ ଜିନିଷକୁ ଯୋଡ଼ିଦିଏ । ଏଣୁ ତା'ର ପରିଶ୍ରମ ବ୍ୟର୍ଥ ହୁଏ ନାହିଁ । ଏକାଠି ହୋଇଥିବା କାଠଖଣ୍ଡ ସବୁ ଏଣେ ତେଣେ ଭାସି ନ ଯାଇ ଠିକ୍ ସ୍ଥାନରେ ପହଞ୍ଚିଯାଏ ।

ଷ୍ଟିକଲ ବ୍ୟାଙ୍କ ପୂର୍ଣ୍ଣ ଆତ୍ମବିଶ୍ୱାସ ସହକାରେ କାମ କରେ । ଏକାଠି କରାଯାଇଥିବା ସବୁ ଜିନିଷ ଠିକ୍‌ରୂପେ ଯୋଡ଼ି ହୋଇଛି କି ନାହିଁ, ତାହା ପରଖିବା ପାଇଁ ସେ ନିଜ ଶରୀରକୁ ଫଡ଼ଫଡ଼ କରି ନଚାଇ ଥାଏ । ସତେ ଯେପରି ସେ ପରିଶ୍ରମ କରିବାର ଆନନ୍ଦ ଉପଭୋଗ କରିଛି । ଯୋଡ଼ି ହୋଇଥିବା ଜିନିଷ ସବୁ ଭାଙ୍ଗି ନ ଯିବ ବୋଲି ତା ମନରେ ବିଶ୍ୱାସ ଜାତ ହେଲେ, ସେ ତାହାକୁ ନେଇ ପୂର୍ବ ନିର୍ଦ୍ଧାରିତ ସ୍ଥାନରେ ଘର ତିଆରି କରେ । ଶରୀରରୁ ନିର୍ଗତ ଅଠାଳିଆ ଜିନିଷ ସିମେଣ୍ଟର କାମ କରେ ଓ ଏକାଠି କରାଯାଇଥିବା କାଠ ଇଟା ପଥରର କାମ କରେ । ଆଗନ୍ତୁକା ବଧୂ ପାଇଁ ଘର ତିଆରି କରି ସେ ବୁଲି ବୁଲି ଥରେ

ତାହାକୁ ଦେଖିନିଏ । ସତେ ଯେମିତି ବୈଭବରେ କିଛି ଅଭାବ ରହିଯାଇଛି । ତା'ପରେ ସେ ନିଜ ମୁହଁରେ ଭର୍ତ୍ତିକରି ସରୁ ବାଲି ନେଇ ଆସେ ଏବଂ ଘରର ଚଟାଣ ଉପରେ ବିଛାଇ ଦିଏ । ଘର ଭିତରେ କେଉଁଠି କିଛି ଭାଙ୍ଗି ଯାଇଥିଲେ ତାହାକୁ ସେ ମରାମତ କରିଦିଏ । ଘରଟିର ସଜାସଜି ଶେଷ ହୋଇଗଲେ ତା ମନରେ ସନ୍ତୋଷ ଆସେ । ସବୁ ପ୍ରସ୍ତୁତି ପୂର୍ଣ୍ଣ ହୋଇଯିବା ପରେ ସେ ପତ୍ନୀ ସନ୍ଧାନରେ ବାହାରିପଡ଼େ । ଯୌତୁକ ବା ଦିଆ ନିଆ ତା' ପାଇଁ ଲୋଡ଼ା ନୁହେଁ । କାରଣ ପୁରୁଷ ନିଜେ ନାରୀର ଆବଶ୍ୟକତା ଅନୁଭବ କରେ ବୋଲି ସେ ଜାଣେ । ତେଣୁ ନିଜ ତରଫରୁ ପ୍ରିୟ ବସ୍ତୁକୁ ପୂର୍ଣ୍ଣ ସ୍ୱାଗତ କରାଯିବ ନାହିଁ କାହିଁକି ? ମଣିଷ ପରି ସେ ଦମ୍ଭ ପ୍ରକଟ କରି ନ ଥାଏ ।

ଉପଯୁକ୍ତ ପତ୍ନୀ ମିଳିଗଲେ, ସେ ତାକୁ ଘରକୁ ନେଇଆସେ । କିଛିଦିନ ପରେ ପତ୍ନୀ ଗର୍ଭବତୀ ହୁଏ । ଅଣ୍ଡା ଦେବା ପରେ ସେ ତାକୁ ବାହାରେ ବୁଲିବା ପାଇଁ ପଠାଇ ଦିଏ ଏବଂ ନିଜେ ଅଣ୍ଡାର ଯତ୍ନ ନିଏ । ସେ କେବଳ ସେମାନଙ୍କ ଖାଦ୍ୟର ବ୍ୟବସ୍ଥା କରି ନ ଥାଏ, ବରଂ ନିରାପତ୍ତା ପାଇଁ ଦରଜାରେ କଡ଼ା ପହରା ଦିଏ । ଏ ମାଛର କର୍ମଠ ସ୍ୱଭାବ ବର୍ଣ୍ଣନା କରି ମି. ଫ୍ରାଙ୍କ୍ ବକ୍‌ଲ୍ୟାଣ୍ଡ ଲେଖିଛନ୍ତି, ''ଘର ଭିତରେ କେଉଁଠି ଟିକିଏ ଭାଙ୍ଗିତୁଟି ଗଲେ, ସେ ତାହାକୁ ତୁରନ୍ତ ସଜାଡ଼ି ଦିଏ ।''

ଷ୍ଟିକଲ ବ୍ୟାଙ୍ଗ ଠିକ୍ ବୁଝାମଣାର ସହିତ ନିଜର ପତ୍ନୀ ଓ ଶାବକମାନଙ୍କ ପ୍ରତିପାଳନର ଦାୟିତ୍ୱ ବହନ କରେ । ସେ ସେମାନଙ୍କୁ କଟକଣା ଭିତରେ ରଖେ ନାହିଁ । ଯଥେଷ୍ଟ ଅମ୍ଳଜାନ ପାଇବା ପାଇଁ ସେ ନିଜ ଘରେ ଦୁଇଟି ଦରଜା ରଖିଥାଏ । ଏହି କାରଣରୁ ସେଠାରେ ଜଳର ପ୍ରବାହ ବାଧା ପାଇ ନ ଥାଏ ଓ ତାଜା ଅମ୍ଳଜାନ ମିଳୁଥାଏ । ଜଳର ପ୍ରବାହ ବନ୍ଦ ହୋଇଗଲେ ସେ ନିଜ ଶରୀରକୁ ଫଡ଼ଫଡ଼ କରି ପ୍ରବାହ ସୃଷ୍ଟି କରେ । ତେଣୁ ଆବଦ୍ଧ ପାଣିରେ ମଇଳା ଜମା ହେବାର ଭୟ ରହେ ନାହିଁ ।

ଷ୍ଟିକଲ ବ୍ୟାଙ୍ଗର ଜୀବନ କେତେ କଳାତ୍ମକ ଓ ସୁରୁଚିପୂର୍ଣ୍ଣ ? ଅଣ୍ଡାରୁ ଛୁଆ ବାହାରିବା ପରେ ପରେ ସେ ଘର ଉପରେ ଥିବା ଛାତକୁ ଅଲଗା କରିଦେଇ

ଗୋଟିଏ ସୁନ୍ଦର ଝୁଲା ତିଆରି କରିଦିଏ । ମନୁଷ୍ୟ ଭଳି ନୀରବତାପୂର୍ଣ୍ଣ ଜୀବନ ସେ ପସନ୍ଦ କରେ ନାହିଁ । ଦୋଳି ତିଆରି କରି ସେ ସେଥିରେ ପତ୍ନୀକୁ ଓ ନିଜ ପିଲାଙ୍କୁ ଝୁଲାଇ ଥାଏ । ନିଜେ ସେ ସ୍ଥାନର ଆଖପାଖରେ ଯିବା ଆସିବା କରୁଥାଏ । ଏଥିରୁ ତାର ଆନନ୍ଦର ଅଭିବ୍ୟକ୍ତି ଜଣାପଡ଼େ । କଳାପ୍ରିୟ ଓ ସୁରୁଚିପୂର୍ଣ୍ଣ ସଦ୍‌ଗୃହସ୍ଥଠାରୁ ଅବଗୁଣ ଦୂରରେ ଥାଏ । ତେଣୁ ଅଶାନ୍ତି ହୋଇ ନ ଥାଏ । ଶାବକମାନେ ଦୋଳି ଛାଡ଼ି ଏଣେତେଣେ ପଳାଇଲେ ସେ ସେମାନଙ୍କୁ ଫେରେଇ ଆଣି ଦୋଳିରେ ପୁଣି ଛାଡ଼ିଦିଏ । ପିଲାମାନେ ନିଜେ ସମର୍ଥ ନ ହେବା ପର୍ଯ୍ୟନ୍ତ ସେ ସେମାନଙ୍କୁ ବୁଲିବା ପାଇଁ ଛାଡ଼େ ନାହିଁ । ଆତ୍ମରକ୍ଷା କରିବା ପାଇଁ ସମର୍ଥ ହେଲାପରେ ସେ ସେମାନଙ୍କୁ ନିଜର ସଂସାର ଗଢ଼ିବା ସକାଶେ ଛାଡ଼ିଦିଏ ।

ଷ୍ଟିକଲ ବ୍ୟାଙ୍କ ମାଛ ପରି ମନୁଷ୍ୟର ପାରିବାରିକ ଜୀବନ ଯଦି ପ୍ରସ୍ତୁତି, ଉଦ୍ଦେଶ୍ୟ ଓ ସୁରୁଚିପୂର୍ଣ୍ଣ ହୁଅନ୍ତା, କେବଳ ପତିବ୍ରତ ନୁହେଁ, ବରଂ ପତ୍ନୀବ୍ରତ ପ୍ରତି ଦୃଷ୍ଟି ଦିଆଯାଆନ୍ତା, ତେବେ ସାମାଜିକ ଜୀବନ ହସ ଖୁସିରେ ପରିପୂର୍ଣ୍ଣ ହୋଇପାରନ୍ତା ।

ମାଈ ବାଘ ୧୦୮ ଦିନ ଗର୍ଭ ଧାରଣ ପରେ ପ୍ରସବ କରେ । ତାହାର ଶାବକଗୁଡ଼ିକ ବଡ଼ ନ ହେବା ପର୍ଯ୍ୟନ୍ତ, ସମର୍ଥ ନ ହେବା ପର୍ଯ୍ୟନ୍ତ ପ୍ରାୟ ଦୁଇ ବର୍ଷ କାଳ ସେ ସେମାନଙ୍କୁ ପାଳିବା ଓ ଶିକ୍ଷା ଦେବାରେ ବ୍ୟସ୍ତ ରହେ । ସହବାସର ଇଚ୍ଛା ହେଲେ ସୁଦ୍ଧା ଟାଳିଦିଏ । ଶାବକଗୁଡ଼ିକ ବଡ଼ ହେବା ପରେ ହିଁ ସେ ପୁନଃ ଗର୍ଭଧାରଣ କରେ । ଏ ପ୍ରକାର ଉଦାହରଣରୁ ଭାବନାର ଗଭୀରତା ଜଣାପଡ଼େ । ଏହାର ବିପରୀତ ଆଚରଣ ହାଲୁକା ସ୍ୱଭାବର ପରିଚାୟକ । ଭାବନାର ଅର୍ଥ କେବଳ ନମ୍ର ହେବା ନୁହେଁ । ଏହାର ଅର୍ଥ ହେଉଛି ନିଜର ସମୀକ୍ଷା ବୁଦ୍ଧିକୁ ଜାଗ୍ରତ ରଖି, ଯାହା ପବିତ୍ର, ରସମୟ ଓ ମର୍ଯ୍ୟାଦାଯୁକ୍ତ ତାହା ପୂରଣ କରିବା ନିମନ୍ତେ ନିଜର ପରିପୂର୍ଣ୍ଣ ନିଷ୍ଠାର ପରିଚୟ ଦେବା ।

କିୱି, ଓଟ ପକ୍ଷୀ ଓ ପେଙ୍ଗୁଇନ୍ ଇତ୍ୟାଦିଙ୍କ ବିଷୟରେ ବିସ୍ତାରିତ ଅଧ୍ୟୟନ କରିବା ପରେ ଚାର୍ଲସ ଡାର୍‌ୱଇନ୍ ଲେଖିଛନ୍ତି, ''ଏ ପକ୍ଷୀମାନଙ୍କର ଗୃହସ୍ଥ ଓ

ପାରିବାରିକ ଜୀବନ ଅତ୍ୟନ୍ତ ବ୍ୟବସ୍ଥିତ ଓ ସମର୍ପିତ ହୋଇଥାଏ । ପୁରୁଷ ଓ ସ୍ତ୍ରୀ ପକ୍ଷୀ କେବଳ ନିଜ ଭିତରେ ନୁହେଁ, ବରଂ ଶାବକମାନଙ୍କ ଲାଳନପାଳନ କରିବାରେ ମଧ୍ୟ ସତର୍କତା, ସ୍ନେହ ଓ ବୁଦ୍ଧି ସହକାରେ କାମ କରିଥାନ୍ତି । ମନୁଷ୍ୟ ଜାତି ପରି ଏମାନଙ୍କ ମଧ୍ୟରେ ପରିବାର ପାଳନ ପୋଷଣର ଅଧିକାଂଶ ଦାୟିତ୍ୱ ନର ଉପରେ ନ୍ୟସ୍ତ ଥାଏ । ଶରୀର ଗଠନ ଦୃଷ୍ଟିରୁ ପୁରୁଷପକ୍ଷୀ ସ୍ତ୍ରୀପକ୍ଷୀ ଠାରୁ ଛୋଟ ହେଲେ ସୁଦ୍ଧା, ବସା ତିଆରି କରିବା, ଅଣ୍ଡା ଉଷୁମ କରିବା ଓ ସ୍ତ୍ରୀପକ୍ଷୀ ଅଣ୍ଡା ଉଷୁମ କରୁଥିବା ବେଳେ ତା ପାଇଁ ଆହାର ବ୍ୟବସ୍ଥା କରିବା, ସଦ୍ୟଜାତ ଶାବକମାନଙ୍କୁ ସମ୍ଭାଳିବାଠାରୁ ଆରମ୍ଭ କରି ସେମାନଙ୍କୁ ଉଡ଼ିବା ଶିଖାଇ ସ୍ୱତନ୍ତ୍ର ପରିବାର ଗଠନ କରି ରହିବାର ପ୍ରେରଣା ଦେବା ପର୍ଯ୍ୟନ୍ତ ଅଧିକାଂଶ କାମ ପୁରୁଷପକ୍ଷୀ କରିଥାଏ । ସେ ନିଜ ପରିବାରକୁ ଶତ୍ରୁଙ୍କ ଆକ୍ରମଣରୁ ମଧ୍ୟ ରକ୍ଷା କରେ ।

ଘରକରଣା କରିବାରେ ପେଙ୍ଗୁଇନ୍ ପକ୍ଷୀ ଯେତେ ପରିଶ୍ରମ କରେ ସମ୍ଭବତଃ ମନୁଷ୍ୟ ସେତେ ପରିଶ୍ରମ କରି ନ ଥାଏ । ଏଥିପାଇଁ ସେ ସେପ୍ଟେମ୍ବର ଓ ଫେବୃୟାରୀ ଏଇ ଦୁଇ ମାସରେ ଦକ୍ଷିଣ ମେରୁ ଅଞ୍ଚଳକୁ ଯାତ୍ରା କରେ । ନିଜର ପଥପ୍ରଦର୍ଶକଙ୍କ ଅନୁଶାସନାଧୀନ ହୋଇ ରହିବା କେତେ ଉପକାରୀ, ତାହା ପେଙ୍ଗୁଇନ୍ ପକ୍ଷୀ ଜାଣେ । ତାଙ୍କର ଅନୁଭୂତିରୁ ପୂର୍ଣ୍ଣରୂପେ ଲାଭ ଉଠାଇବା ସକାଶେ ପେଙ୍ଗୁଇନ୍ ନିଜ ମୁଖ୍ୟଙ୍କର ପଦଚିହ୍ନ ଉପରେ ହିଁ ଚାଲିଥାଏ ।

ମେରୁ ପ୍ରଦେଶରେ ପହଞ୍ଚିବା ପରେ ପୁରୁଣା ପେଙ୍ଗୁଇନ୍‌ମାନେ ପୂର୍ବବର୍ଷର ପରିତ୍ୟକ୍ତ ଘରେ ରହିଥା'ନ୍ତି । କିନ୍ତୁ ନବ ଯୁବକ ପେଙ୍ଗୁଇନ୍ ନିଜ ବାପା ମା'ଙ୍କ ଆଜ୍ଞା ନେଇ ନୂଆ ପରିବାର ଗଢ଼ିବା ସକାଶେ ଚାଲିଯାନ୍ତି । ସେମାନଙ୍କର ପ୍ରଥମ ଆବଶ୍ୟକତା ହୁଏ ଏକ ଯୋଗ୍ୟ ପତ୍ନୀର । ବିବାହ କରି ନଥିବା କୌଣସି ସ୍ତ୍ରୀପକ୍ଷୀକୁ ସେ ଖୋଜେ । ନିଜର ବିଚିତ୍ର ଭାବଭଙ୍ଗୀ ଓ ଭାଷା ମାଧ୍ୟମରେ ସେ ସ୍ତ୍ରୀପକ୍ଷୀ ନିକଟରେ ସଂପର୍କ ପ୍ରାର୍ଥନା କରେ । ଜୀବନସାଥୀ ନିର୍ବାଚନ କରିବା ସମୟରେ କେବଳ ମନୁଷ୍ୟ ହିଁ ଗୁଣପ୍ରତି କୌଣସି ଦୃଷ୍ଟି ନଦେଇ ଧନ ଓ ରୂପଲାବଣ୍ୟ ଉପରେ ବେଶୀ ନଜର

ଦେଇଥାଏ । କିନ୍ତୁ ଜୀବନସାଥୀ ଠାରୁ ସୁଦୃଢ଼ ସାହଚର୍ଯ୍ୟ ପାଇବାର ପ୍ରଶ୍ନକୁ ପେଙ୍ଗୁଇନ ଭଲ ରୂପେ ପରଖ କରିଥାଏ ।

ସେ ନିଜେ ସଂପର୍କ ପ୍ରାର୍ଥନା କରେ । ଜୀବନରେ ଧର୍ମପତ୍ନୀର ମହତ୍ତ୍ୱ ରହିଛି ବୋଲି ତାକୁ ଜଣା । ତେଣୁ ସେ ପତ୍ନୀକୁ ସନ୍ତୁଷ୍ଟ କରି ତାହାର ସମ୍ପର୍କ ଭିକ୍ଷା କରେ । ପତ୍ନୀର ପ୍ରସନ୍ନତା ହେଉଛି ସୁନ୍ଦର ମସୃଣ ପଥର । ଗୋଟିଏ ସୁନ୍ଦର ପଥର ଥଣ୍ଟରେ ଧରି ପୁରୁଷ ପେଙ୍ଗୁଇନ୍ ସ୍ତ୍ରୀ ପେଙ୍ଗୁଇନ୍ ନିକଟକୁ ଯାଏ । ସେ ପଥର ଦେଖି ସ୍ତ୍ରୀପେଙ୍ଗୁଇନ୍ ପୁରୁଷପକ୍ଷୀର ଗୁଣ, ପୁରୁଷାର୍ଥ ଓ ଶ୍ରମଶକ୍ତି ବିଷୟରେ ଜାଣିପାରେ । ପୁରୁଷ ତାହାର ପସନ୍ଦଯୋଗ୍ୟ ହେଲେ ସେ ସ୍ୱୀକୃତି ଦେଇଥାଏ । ଅନ୍ୟଥା ଥଣ୍ଟରେ ଆଘାତ କରି ସେ ପୁରୁଷପକ୍ଷୀକୁ ତଡ଼ିଦିଏ । ଆଘାତ ପାଇଥିବା ପୁରୁଷପକ୍ଷୀ ପୁଣିଥରେ ଚେଷ୍ଟା କରେ । ହୁଏତ ସ୍ତ୍ରୀପକ୍ଷୀ ଦୟା ବିଗଳିତ ହୋଇ ସ୍ୱୀକୃତି ଦେଇପାରେ । ଏଇ ଆଶା ମନରେ ରଖି ସେ ଉଦାସ ମନରେ କିଛି ଦୂରରେ ବସି ରହେ । ସ୍ତ୍ରୀପକ୍ଷୀ ତେବେ ସୁଦ୍ଧା ରାଜି ନ ହେଲେ ସେ ଅନ୍ୟତ୍ର ସଂପର୍କ କରିବାକୁ ଚାଲିଯାଏ ।

ସ୍ତ୍ରୀପକ୍ଷୀର ସ୍ୱୀକୃତି ମିଳିଗଲେ, ପୁରୁଷପକ୍ଷୀର ଆନନ୍ଦ ଦେଖିବାର ଯୋଗ୍ୟ । ସେ ନାଚି ନାଚି ସତେ ଯେମିତି ଆକାଶ ଛୁଇଁଯାଏ । କିନ୍ତୁ ସ୍ତ୍ରୀପକ୍ଷୀ ଜାଣେ ଯେ ପରିଶ୍ରମ କଲେ ହିଁ ଘରକରଣା ହୋଇପାରେ । ତେଣୁ ସେ ପୁରୁଷପକ୍ଷୀକୁ ସଂକେତ ଦେଇ ଘର ତିଆରି କରିବାରେ ଲାଗିପଡ଼େ । ପୁରୁଷପକ୍ଷୀ ଦୂର ଦୂର ସ୍ଥାନକୁ ଯାଇ ପଥରଖଣ୍ଡ ନେଇଆସେ । ସ୍ତ୍ରୀପକ୍ଷୀ ଘର ତିଆରି କରିବାରେ ଲାଗିପଡ଼େ । ଏଇ ସମୟରେ ପୁରୁଷପକ୍ଷୀକୁ ଗାଳିମନ୍ଦ ଶୁଣିବାକୁ ପଡ଼େ ଓ ସେ ତାହା ସହିନିଏ । ପତ୍ନୀର ସ୍ନେହ ଓ ସଦ୍‌ଭାବ ଜନିତ ସୁଖ ଆଗରେ ମୃଦୁମିଷ୍ଟ ତିରସ୍କାର ନଗଣ୍ୟ ବୋଲି ସେ ଜାଣିଥାଏ । ଘର ତଆରି ସରିବା ପରେ ଉଭୟ ସ୍ନାନ କରିବା ପାଇଁ ବାହାରି ପଡ଼ନ୍ତି । ନିର୍ମଳ ଜଳଧାରାରେ ବହୁ ସମୟ ଧରି ସ୍ନାନ କରନ୍ତି । ସ୍ନାନ ସାରି ଫେରିବା ପରେ ସେମାନେ ଦେଖନ୍ତି ହୁଏତ ଅନ୍ୟ କୌଣସି ପେଙ୍ଗୁଇନ୍ ସେମାନଙ୍କର ଘର ଅଧିକାର କରି ବସିଯାଇଛି । ଉଭୟଙ୍କ ଭିତରେ ଲଢ଼େଇ ହୁଏ । ଯେଉଁ ପକ୍ଷୀ ଜିତିଯାଏ, ସେ

ସେହି ଘରେ ରହିଯାଏ । କିନ୍ତୁ ଲଢ଼େଇ ପରେ ମଧ୍ୟ ସ୍ନାନ କରିବା ଆବଶ୍ୟକ । ଏଥର ସେମାନେ ଆଗଭଳି ଭୁଲ କରି ବସନ୍ତି ନାହିଁ । ଜଣଜଣ କରି ସ୍ନାନ କରିବାକୁ ଯାଆନ୍ତି ଓ ଫେରିଆସି ପୁଣି ଘର କାମରେ ଲାଗିପଡ଼ନ୍ତି । ସ୍ତ୍ରୀପକ୍ଷୀ ଅଣ୍ଡା ପ୍ରସବ କରେ ସତ, କିନ୍ତୁ ଶାବକମାନଙ୍କର ଲାଳନ ପାଳନ ପ୍ରକ୍ରିୟାର ଦାୟିତ୍ୱ ପୁରୁଷପକ୍ଷୀ ବହନ କରେ । ପେଙ୍ଗୁଇନ୍‌ର ଏପରି କାମ ଦେଖି ତା ସହିତ ମନୁଷ୍ୟର ତୁଳନା କରିବା ପାଇଁ ଇଚ୍ଛା ହୁଏ । ସେମାନଙ୍କ ପରି ମନୁଷ୍ୟ ମଧ୍ୟ ଲୁଟପାଟ ଓ ସ୍ୱାର୍ଥପର ପ୍ରବଞ୍ଚନାରେ କେତେ ଅଶାନ୍ତି ଓ ସଂଘର୍ଷରତ ହୋଇଥାଏ । ତଥାପି ସେ ଏହି ପକ୍ଷୀଠାରୁ ସୁଖୀ ଗୃହସ୍ଥର କୌଣସି ଲକ୍ଷଣ ଶିଖିପାରେ ନାହିଁ । ଘରେ ସେ ଅନ୍ୟମାନଙ୍କ ସହିତ ଲଢ଼େଇ ଝଗଡ଼ାରେ ବ୍ୟସ୍ତ ହୋଇପଡ଼େ । ପେଙ୍ଗୁଇନ୍ ପରି ସହିଷ୍ଣୁ ସ୍ୱଭାବ ମଧ୍ୟ ତା'ଠାରେ ଦେଖାଦେଇ ନଥାଏ ।

କଇଁଛର ନାଚିବା ଦୃଶ୍ୟ ଦେଖିବା ତ ଦୂରର କଥା, ତାହାର ଦ୍ରୁତ ଗତିରେ ଚାଲିବା ମଧ୍ୟ କେହି ଦେଖି ନ ଥିବେ । କିନ୍ତୁ ଦାମ୍ପତ୍ୟ ଜୀବନରେ ଆବଦ୍ଧ ହେବା ସମୟରେ ତାହାର ପ୍ରସନ୍ନତା ଓ ନୃତ୍ୟ ଦେଖିବାର ଯୋଗ୍ୟ । କଇଁଛ ପାଣିରେ ନାଚେ ଏବଂ ନାନା ପ୍ରକାରର ହାବଭାବ ପ୍ରକଟ କରେ । ଏହା ଦେଖି ସ୍ତ୍ରୀକଇଁଛ ଭାବବିଭୋର ହୋଇଉଠେ । କୁମ୍ଭୀର ମଧ୍ୟ ଏହା କରେ । ପ୍ରଣୟ ସମୟରେ କୁମ୍ଭୀର ମଧ୍ୟ ନାଚ କରେ ।

କେବେକେବେ ଅଶ୍ଳୀଳ ସ୍ୱଭାବରେ ମନୁଷ୍ୟ ସାମାଜିକ ମର୍ଯ୍ୟାଦାକୁ ଲଙ୍ଘନ କରିଯାଏ । କିନ୍ତୁ ଏ ପକ୍ଷୀ ଓ ପ୍ରାଣୀମାନେ ସେମାନଙ୍କ ଉଦ୍ଦେଶ୍ୟରେ ଗଠିତ ବିଧାନରୁ ତିଳେହେଲେ ବିଚ୍ୟୁତ ହୋଇ ନଥାନ୍ତି । ପିମ୍ପୁଡ଼ି ରାଜବଂଶୀ ପ୍ରାଣୀ । ସେମାନଙ୍କ ସମାଜରେ ରାଣୀ ସର୍ବପ୍ରଭୁତ୍ୱସମ୍ପନ୍ନ ହୋଇଥାଏ । ସେ ଅଣ୍ଡା ଦିଏ ଏବଂ ସନ୍ତାନ ପ୍ରସବ କରେ । ମହୁମାଛି ପରି ସେ ନିଜ ପାଇଁ କେବଳ ଗୋଟିଏ ପୁରୁଷକୁ ବାଛିନିଏ । ଅନ୍ୟାନ୍ୟ ପିମ୍ପୁଡ଼ିମାନେ ଶ୍ରମିକ, ଚୌକିଦାର ଓ ମେହେନ୍ତର ଭଳି କାମ କରନ୍ତି । ପ୍ରତ୍ୟେକ ପିମ୍ପୁଡ଼ି ନିଷ୍ଠାପର ଭାବରେ ନିଜର ଦାୟିତ୍ୱ ପାଳନ କରିଥାନ୍ତି । ସାମାନ୍ୟ ଅଭିଯୋଗ କରିବା ପାଇଁ ସୁଦ୍ଧା କେହି ସୁଯୋଗ ପାଇ ନ

ଥାଏ । ଅଥଚ ସେମାନଙ୍କୁ ନିଜ ଅଂଶରୁ କିଛିହେଲେ ଅଧିକ ମିଳି ନଥାଏ । ସାମାଜିକ ବ୍ୟବସ୍ଥା ଅନ୍ତର୍ଗତ ଶ୍ରମ ଓ ନିଷ୍ଠାର ଆଦର୍ଶକୁ ମନୁଷ୍ୟ ଯଦି ପିମ୍ପୁଡ଼ିଠାରୁ ଶିଖିଥାଆନ୍ତା, ତେବେ ସେ ଆଜି ପୂର୍ବ ଅପେକ୍ଷା କେତେ ଅଧିକ ସୁଖୀ ଓ ସନ୍ତୁଷ୍ଟ ହୋଇ ରହିଥାନ୍ତା, କିନ୍ତୁ ସ୍ୱାର୍ଥ ପାଇଁ, ନିଜର ଉଦ୍ଦେଶ୍ୟ ସାଧନ ପାଇଁ ମଣିଷ ନିଜ ଭାଇଆଡ଼କୁ ନଜର ଦିଏ ନାହିଁ । ଓଜନରେ କମ୍ କରି, ଅପମିଶ୍ରଣ କରି, ଅଳ୍ପ ପରିଶ୍ରମ ବଦଳରେ ଅଧିକ ସୁଖ ପାଇବାର ଲାଳସା ନେଇ ଏ ମଣିଷ ପିମ୍ପୁଡ଼ିଠାରୁ ମଧ ଦୀନ ହୀନ ।

ଥରେ ଆଫ୍ରିକାରେ ବନ୍ୟ ଜନ୍ତୁ ଖୋଜୁଥିବା ଏକ ଦଳ ହାତୀମାନଙ୍କର ସମାଜ ବ୍ୟବସ୍ଥା ଅଧ୍ୟୟନ କଲେ । ସଂଯୋଗରେ ସେମାନେ ଏକ ନିରାପଦ ସ୍ଥାନ ଦେଖିନେଲେ । ସେଠାରେ ବସି ସେମାନେ ହାତୀମାନଙ୍କର କାର୍ଯ୍ୟକଳାପ ଦେଖିପାରିଲେ । ଦିନେ ସେମାନେ ଦେଖିଲେ ଯେ ପଲେ ହାତୀ ସକାଳୁ ଏକ ବ୍ୟୂହ ରଚନା କରିଛନ୍ତି । କେତେକ ହାତୀ ଚାରିପାଖରେ ଘେରି ରହିଛନ୍ତି । ପଲ ଭିତରେ ଥିବା ସବୁଠାରୁ ମୋଟା ଓ ବଳୁଆ ହାତୀ ଏଣେତେଣେ ଯିବା ଆସିବା କରୁଥିଲା । ବାକି ସବୁହାତୀ ନିଜ ନିଜର ପହରାଦେବା ସ୍ଥାନରେ ସ୍ଥିର ହୋଇ ରହିଥିଲେ । ସେ ବଡ଼ହାତୀ ଅନ୍ୟମାନଙ୍କର ପିତାମହ ବା ମୁଖ୍ୟ ଥିବାପରି ମନେ ହେଉଥିଲା । ତାହାର ସଂକେତ ଅନୁସାରେ ସବୁକାମ ହେଉଥିଲା । କିନ୍ତୁ ମଣିଷ କଥା ତ ଅଲଗା । ସେ ସାମାନ୍ୟ କିଛି ଜାଣିଗଲେ କିମ୍ବା ପ୍ରଭୁତ୍ୱସମ୍ପନ୍ନ ହୋଇଗଲେ, ଭାଇମାନଙ୍କ କଥା ତ ଅଲଗା, ପରିବାରର ଅନ୍ୟାନ୍ୟ ସମ୍ବେଦନଶୀଳ ଉପଯୋଗୀ ଅଙ୍ଗ ଜେଜେ, ବାପ, ମା'ଙ୍କୁ ଏକୁଟିଆ ଏବଂ ଦୀନହୀନ ଅବସ୍ଥାରେ ପରିତ୍ୟାଗ କରି ଅନ୍ୟତ୍ର ଚାଲିଯାଏ ।

ମୁଖ୍ୟର ଆଦେଶ ଅନୁସାରେ ପାଞ୍ଚ ଛଅଗୋଟି ହସ୍ତିନୀ ସେ ଘେରା ଭିତରକୁ ପ୍ରବେଶ କଲେ । ଘେରା ମଝିରେ ଶୋଇଥିଲା ଏକ ଗର୍ଭବତୀ ହସ୍ତିନୀ । ତାହାର ପ୍ରସବପୀଡ଼ା ହେଉଥିଲା । ଏହି କାରଣରୁ, କୌଣସି ସମ୍ଭାବ୍ୟ ଆକ୍ରମଣକାରୀଙ୍କ ଠାରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ଏପରି ବ୍ୟୂହ ରଚନା କରାଯାଇଥିଲା । ପରସ୍ପର ମଧ୍ୟରେ ଥିବା ପ୍ରେମ, ଆତ୍ମୀୟତା ଓ ନିଷ୍ଠାର ଏହି

ଦୃଶ୍ୟ ପ୍ରକୃତରେ ମନୁଷ୍ୟକୁ ଯଥେଷ୍ଟ ଉପକାରୀ ପ୍ରେରଣା ଦେଇପାରେ । ମନୁଷ୍ୟ ଏହା ପରିପାଳନ କଲେ କେତେ ଭଲ ହୁଅନ୍ତା ।

ଶାବକ ଜନ୍ମ ହେଲା । କେତେକ ପ୍ରସୂତୀର ଓ କେତେକ ଶାବକର ଯତ୍ନ ନେଲେ । ପ୍ରସବର ଦୁଇ ତିନିଘଣ୍ଟା ପରେ, ଯେ ପର୍ଯ୍ୟନ୍ତ ଶାବକ ଚାଲବୁଲ କରି ନଥିଲା, ସେପର୍ଯ୍ୟନ୍ତ ହାତୀମାନେ ତାହାକୁ ନିରାପଦରେ ରଖିବା ସକାଶେ ଠିଆ ହୋଇଥିଲେ । ହସ୍ତିନୀମାନେ ଧାଈର କାମ କଲେ । ଶାବକ ଓ ପ୍ରସୂତୀର ଶରୀରକୁ ପରଷ୍କାର କରିବାଠାରୁ ଆରମ୍ଭ କରି, ସେମାନଙ୍କୁ ଖାଦ୍ୟ ଖୁଆଇବା ପର୍ଯ୍ୟନ୍ତ ସବୁକାମ ସହଯୋଗ ସହକାରେ ହାତୀମାନେ କରିଗଲେ । ମନୁଷ୍ୟ ପାଇଁ ତାହା ଦେଖିବା, ଚିନ୍ତା କରିବା ଓ ବୁଝିବାର କଥା । ସେ ସବୁ ନିଜ ଜୀବନରେ ଧାରଣ କରିବା ଲାଗି ଅନୁକରଣୀୟ ।

ପେଙ୍ଗୁଇନ୍ ଚଢ଼େଇ ଶାବକମାନଙ୍କୁ କଠୋର ନିୟନ୍ତ୍ରଣରେ ରଖନ୍ତି । ବୟସ୍କ ପକ୍ଷୀମାନଙ୍କ ନିୟନ୍ତ୍ରଣ କାରଣରୁ ଶାବକଗୁଡ଼ିକ ଇତସ୍ତତଃ ବୁଲିପାରନ୍ତି ନାହିଁ । ଶାରୀରିକ ଦୃଷ୍ଟିରୁ ତଥା ଘରକରଣା ସକାଶେ ସେମାନେ ଯୋଗ୍ୟ ସମର୍ଥ ହେବା ପରେ ସ୍ୱଚ୍ଛନ୍ଦ ବିଚରଣ ପାଇଁ ସେମାନଙ୍କୁ ଅନୁମତି ମିଳେ । ଅଥଚ ମନୁଷ୍ୟ ସନ୍ତାନ ପ୍ରସବ କରିବା ଶିଖିଲେ ସୁଦ୍ଧା ସେମାନଙ୍କ ଭିତରୁ ଅର୍ଦ୍ଧେକ ଏତେ କଠୋର ଭାବରେ ସନ୍ତାନମାନଙ୍କ ପ୍ରତି ନିଜର ଦାୟିତ୍ୱ ପାଳନ କରିବା ଜାଣିନଥାନ୍ତି । ସନ୍ତାନମାନଙ୍କୁ ଯୋଗ୍ୟ ନାଗରିକ କରିବା ବିଷୟରେ ଅନେକ ଲୋକ ଚିନ୍ତା କରି ନ ଥାନ୍ତି ।

ସାମାନ୍ୟ ଅସୁବିଧା ହେଲେ ମନୁଷ୍ୟ ନିଜ ଦାୟିତ୍ୱରୁ ଓହରିଯାଏ, କିନ୍ତୁ ଅନ୍ୟ ଜୀବମାନେ ନିଜର ଗୃହସ୍ଥ କର୍ତ୍ତବ୍ୟକୁ କେତେ ନିଷ୍ଠାପର ଭାବରେ ପାଳନ କରିଥାନ୍ତି, ତାହା ଦେଖିବାର ଯୋଗ୍ୟ । ଏହା ଦେଖିବାକୁ ହେଲେ ଆଫ୍ରିକା ଯିବା ଦରକାର । ସେଠାରେ କିଓ୍ୱି ନାମରେ ଏକ ପ୍ରକାର ପକ୍ଷୀ ଦେଖାଯାନ୍ତି । ସେ ପକ୍ଷୀ କାମାଚାରକୁ ଅତି ସାବଧାନତାର ସହିତ ପାଳନ କରେ । ତାହା ଯେମିତି କହି ଦେଖି ନ ପାରେ, ସେଥିପାଇଁ ସେ ଅତ୍ୟନ୍ତ ସାବଧାନ ଥାଏ । କାମ ସମ୍ବନ୍ଧୀୟ ମର୍ଯ୍ୟାଦାକୁ କୋହଳ କରିଦେବା ଫଳରେ ଆଜି ସାମାଜିକ ଜୀବନରେ

ଅଶ୍ଳୀଳତା ବୃଦ୍ଧି ପାଇଛି । କିନ୍ତୁ ଏ କଥା ଜାଣେ ଏବଂ ନିଜର ବଂଶକୁ ସର୍ବଦା ସଦାଚାରୀ ଭାବରେ ଦେଖିବାକୁ ଇଚ୍ଛା କରେ । ତେଣୁ ସେ ଏକାନ୍ତ ସ୍ଥାନରେ ଏବଂ କେହି ଦେଖି ନ ପାରିବା ଭଳି ଅବସ୍ଥାରେ ସହବାସ କରେ । ସ୍ତ୍ରୀପକ୍ଷୀ ଅଣ୍ଡା ଦେବା ପରେ ପୁରୁଷପକ୍ଷୀ ତାହାର ରକ୍ଷଣାବେକ୍ଷଣ କରିଥାଏ । ଅଣ୍ଡା ଉଷୁମ କରେ । ପ୍ରାୟ ଅଶୀ ଦିନ ପର୍ଯ୍ୟନ୍ତ ତାହାକୁ ଅଣ୍ଡାର ଯତ୍ନ ନେବାକୁ ପଡ଼େ । ଅଣ୍ଡା ଫୁଟି ଛୁଆ ବାହାରିଲେ ସେ ସନ୍ତାନର ପିତା ରୂପେ ଗର୍ବ ଅନୁଭବ କରିବା ସଙ୍ଗେ ସଙ୍ଗେ ତାହାକୁ ବିଶ୍ରାମ ମିଳିବ ବୋଲି ଖୁସି ହୁଏ । କିନ୍ତୁ ସ୍ତ୍ରୀପକ୍ଷୀ ସଙ୍ଗେ ସଙ୍ଗେ ଆଉ ଗୋଟିଏ ଅଣ୍ଡା ଦିଏ ଏବଂ ପୁରୁଷପକ୍ଷୀ ପୁନରାୟ ୮୦ ଦିନ ପର୍ଯ୍ୟନ୍ତ ତାହାର ରକ୍ଷଣାବେକ୍ଷଣର ଦାୟିତ୍ୱ ଗ୍ରହଣ କରେ । ଏମିତି କେତେକେତେ ପୁରଶ୍ଚରଣ କରି ସେ ନିଜ ନିଷ୍ଠାର ପରିଚୟ ଦେଇଥାଏ । ମଣିଷ କ'ଣ ଏମିତି ନୀତିବାନ ହୋଇପାରେ ? ଏ ପ୍ରଶ୍ନ ଉପରେ ବିଚାର କଲେ ଉତ୍ତର ନୈରାଶ୍ୟଜନକ ହିଁ ହେବ ।

## ବାସନାର କୁପରିଣାମ

ପ୍ରାଣୀ ଜଗତରେ ଏକ ଦିଗରେ ଯୌନ ସଦାଚାର, ଅଧିକ ବ୍ରହ୍ମଚର୍ଯ୍ୟ ଏବଂ ପାରିବାରିକ ଜୀବନରେ ସ୍ନେହସିକ୍ତ ଘନିଷ୍ଠତା ଦେଖାଦେଇଥାଏ । ଅନ୍ୟ ଦିଗରେ କାମର ବିଦ୍ରୁପ ମଧ୍ୟ ଦେଖିବାକୁ ମିଳେ । ଏହି ବିଦ୍ରୁପ ଯୋଗୁଁ ମନୁଷ୍ୟ ଜାତି ନାରୀକୁ କାମିନୀ ଓ ରମଣୀ ଦୃଷ୍ଟିରେ ଦେଖେ । ଫଳରେ ସେ ଦୁର୍ଦଶା ଭୋଗ କରିଥାଏ । ସଂଯମ ଓ ଦାମ୍ପତ୍ୟ ଜୀବନର ମର୍ଯ୍ୟାଦାକୁ ଉଲ୍ଲଙ୍ଘନ କରୁଥିବା ଜୀବଙ୍କର ଜୀବନକାଳ ଅତ୍ୟନ୍ତ ଭୟାବହ ହୋଇଥାଏ । ତାହା ଦେଖି ରୋମାଞ୍ଚ ଜାତ ହୁଏ । ଅତିକମ୍‌ରେ ମନୁଷ୍ୟ ପରି ବିଚାରଶୀଳ ପ୍ରାଣୀ ଏପରି ପରିସ୍ଥିତି ସୃଷ୍ଟି କରିବା ଉଚିତ ନୁହେଁ ।

ପ୍ରଜନନ ଋତୁ ଆସିଲେ ପୁରୁଷ ସୀଲ୍ ମାଛ ସ୍ତ୍ରୀ ସୀଲ୍ ପାଇବା ପାଇଁ ଆପଣା ଆପଣା ଭିତରେ ଲଢ଼େଇ କରିଥାନ୍ତି । ଗୋଟିଏ ଗୋଟିଏ ବଳୁଆ ଅଣ୍ଡିରା ସୀଲ୍ ମାଛ ୪୦-୫୦ ପର୍ଯ୍ୟନ୍ତ ମାଈ ସୀଲ୍‌ର ମାଲିକ ହୋଇଥାନ୍ତି । ତାହାର ବିକ୍ଷୁବ୍ଧ ବାସନା ଅପରିମିତ । ନୂତନ ସ୍ତ୍ରୀ ସୀଲ୍ ଦେଖିବା ପରେ

ତାହାର ମନ ବିଚଳିତ ହୋଇଉଠେ ଏବଂ ସେ ପାଖରେ ଥିବା ସୀଲ୍ ମାଛ ଦଳ ଉପରେ ଆକ୍ରମଣ କରେ । ସେ ଦଳର ମାଲିକ ଅଣ୍ଡିରା ସୀଲ୍ ମାଛ ସହିତ ସେ ପ୍ରବଳ ସଂଘର୍ଷ କରେ । ଧରାଯାଉ, ସଂଘର୍ଷରେ ସେ ଜୟଲାଭ କରେ ଏବଂ ନିଜ ପସନ୍ଦଯୋଗ୍ୟ ମାଈ ସୀଲ୍‌କୁ ସଙ୍ଗରେ ନେଇ କ୍ଳାନ୍ତ, ଆହତ ଓ ଗର୍ବୋନ୍ମତ୍ତ ହୋଇ ନିଜ ଦଳ ନିକଟକୁ ଫେରିଆସେ । ସେତେବେଳେ ସେ ଦେଖେ ଯେ ନିଜ ଦଳରୁ ଦୁଇ ଚାରି ମାଈ ସୀଲ୍‌କୁ ଅନ୍ୟ କେହି ଅଣ୍ଡିରା ସୀଲ୍ ନେଇଯାଉଛି । ସେତେବେଳେ ସେ ହୁଏତ ମନ ମାରି ଅପହରଣର ସେହି ଆଘାତକୁ ସହିଯାଏ ଅଥବା ସେହି କ୍ଳାନ୍ତ ଅବସ୍ଥାରେ ସୁଦ୍ଧା ଯୁଦ୍ଧର ଆହ୍ୱାନ ଦିଏ । ସେତେବେଳର ପରିଣାମ କ'ଣ ହୁଏ, ତାହା ଅନୁମାନ କରିବା କଷ୍ଟକର ।

ଏହି ପ୍ରବୃତ୍ତିର ପରିଣାମରେ ତିନିମାସର ସେହି ପ୍ରଜନନ ଋତୁ ଶେଷ ହେବାର ସମୟ ଭିତରେ ଅଧିକାଂଶ ପୁରୁଷ ସୀଲ୍ କ୍ଳାନ୍ତ ଓ କ୍ଷତବିକ୍ଷତ ହୋଇପଡ଼ନ୍ତି । ଖାଦ୍ୟ ବ୍ୟବସ୍ଥା କରିବାର ଶକ୍ତି ସୁଦ୍ଧା ସେମାନଙ୍କଠାରେ ରହେ ନାହିଁ । ଏହାର କାରଣ ହେଉଛି– ସ୍ତ୍ରୀ ପ୍ରତି ନରପଶୁର ନିରନ୍ତର ଯୌନ ଜାଗ୍ରତ ପ୍ରବୃତ୍ତି । ବିପରୀତ ପକ୍ଷରେ ସାମୂହିକ ସହ–ଜୀବନ ପ୍ରବୃତ୍ତି ଥିବା ପଶୁମାନଙ୍କ ଭିତରେ ପୁରୁଷମାନେ ସ୍ତ୍ରୀ ପ୍ରତି ଅନାବଶ୍ୟକ ରୂପେ ଆକୃଷ୍ଟ ହୋଇ ନ ଥାନ୍ତି । କେବଳ ପ୍ରଜନନ ଋତୁରେ ସ୍ତ୍ରୀ ବିଶେଷ ପ୍ରତି ଆକୃଷ୍ଟ ହୋଇଥାନ୍ତି । ଅନ୍ୟ ସମୟରେ ସେମାନେ ଲିଙ୍ଗାତୀତ ସାହଚର୍ଯ୍ୟ ଅବସ୍ଥାରେ ରହିଥାନ୍ତି ।

ହାତୀର ଶକ୍ତି ଓ ବୁଦ୍ଧି ସୁବିଦିତ । କିନ୍ତୁ କାମାଚାରର ଏହି ବିଷମତାବାଦୀ ପ୍ରବୃତ୍ତି କାରଣରୁ ହାତୀମାନଙ୍କର ମୁଖ୍ୟ ମଧ୍ୟ ନିଜ ଶକ୍ତି ଓ ସମୟର ଅଧିକାଂଶ ଭାଗ ଅନାବଶ୍ୟକ ସଂଘର୍ଷରେ ଉପଯୋଗ କରେ ।

ହାତୀମାନେ ଦଳବାନ୍ଧି ରହିଥାନ୍ତି । ସେ ଦଳର ନାୟକ ଦଳରେ ଥିବା ସବୁ ହସ୍ତିନୀଙ୍କର ସ୍ୱାମୀ । ଦଳର ଅନ୍ୟ କୌଣସି ସଦସ୍ୟ ସେ ଦଳରେ ଥିବା କୌଣସି ହସ୍ତିନୀ ପ୍ରତି କାମ ଚେଷ୍ଟା ବା ପ୍ରେମ ପ୍ରଦର୍ଶନ କଲେ, ମୁଖ୍ୟହାତୀ ତାହା ଦେଖିବା ସଙ୍ଗେ ସଙ୍ଗେ ତା ଉପରେ ଆକ୍ରମଣ କରି ତାହାକୁ ତଡ଼ିଦିଏ କିମ୍ବା ପରାସ୍ତ କରି ପ୍ରତାଡ଼ିତ ବା ଅପମାନିତ କରେ ।

କୌଣସି ଯୁବକ ଓ ଶକ୍ତିଶାଳୀ ହାତୀ କେବେକେବେ ଏପରି ଉଦ୍ଧତ ଚେଷ୍ଟା କରି ମୁଖ୍ୟ ହାତୀକୁ ଉତ୍ତେଜିତ କରେ । ଯୁଦ୍ଧରେ ସେ ଯଦି ତାହାକୁ ପରାସ୍ତ କରିପାରେ, ତେବେ ସେ ସେହି ଦଳରେ ଥିବା ସବୁ ହସ୍ତିନୀଙ୍କର ସ୍ୱାମୀ ତଥା ଦଳର ଅଧିପତି ହୋଇଯାଏ । ପରାଜିତ ଦଳପତି ପ୍ରାୟ ପାଗଳ ହୋଇଯାଏ ଓ ବିପଦ ସୃଷ୍ଟି କରେ ।

"ମରଣଂ ବିନ୍ଦୁପାତେନ ଜୀବନଂ ବିନ୍ଦୁ ଧାରଣମ୍" ଏ ସୂତ୍ରରେ କାମୁକତାର ମର୍ଯ୍ୟାଦା ବର୍ଜିତ ଚରଣକୁ ମରଣର ପ୍ରତୀକ ବୋଲି କୁହାଯାଇଛି । ଏଥିରେ ସର୍ବନାଶ ହିଁ ସନ୍ନିହିତ । ଅତ୍ୟନ୍ତ କାମୁକ ସ୍ୱଭାବଯୁକ୍ତ ପୁରୁଷ ଦ୍ୱାରା ସେମାନଙ୍କ ପତ୍ନୀମାନେ ପ୍ରଭାବିତ ହୋଇଥାନ୍ତି– ଏପରି ବିଚାର ସର୍ବଥା ଅବାନ୍ତର । ସତକଥା ହେଉଛି– ପତ୍ନୀମାନେ ଏ ପ୍ରକୃତିକୁ ଘୃଣା କରିଥାନ୍ତି । ଯେଉଁଠାରେ ଏପରି ଘୃଣା ଜାତ ହେବ, ସେଠାରେ ସଦ୍‌ଭାବ ରହିବ କିପରି ? ସ୍ତ୍ରୀ ଯେତେବେଳେ ଅନୁଭବ କରେ ଯେ ପୁରୁଷ ନିଜର ତୃପ୍ତି ପାଇଁ ତା ଶରୀରର ଅନାବଶ୍ୟକ ଉପଯୋଗ କରିଛି, ସେତେବେଳେ ପତିଭକ୍ତି ସ୍ଥାନରେ ଓଲଟା ଆକ୍ରମଣ କରିବସେ । ଏପରି ଆକ୍ରମଣ ଫଳରେ ନରର ଦୁର୍ଗତି ହିଁ ହୋଇଥାଏ । "ମରଣଂ ବିନ୍ଦୁପାତେନ" ସୂତ୍ର ଅନୁସାରେ ଉଦ୍ଧତ କାମବିକାର ମୃତ୍ୟୁଦୂତ ରୂପେ ସମ୍ମୁଖକୁ ଆସିଯାଏ ।

ପୁରୁଷ ବିଛା ନିଜ ପ୍ରେୟସୀ ସହିତ ଘଣ୍ଟା ଘଣ୍ଟା ଧରି ନୃତ୍ୟ କରେ । କେବେକେବେ ଖୁବ୍ ବେଗରେ ସେମାନେ ଆଗକୁ ଯାଆନ୍ତି ଓ ପଛକୁ ଫେରନ୍ତି । କ୍ଳାନ୍ତ ଓ ଶିଥିଳ ହୋଇଗଲେ ସେମାନେ ଏକ ସଙ୍ଗରେ ବିଶ୍ରାମ କରନ୍ତି । କିନ୍ତୁ ସ୍ତ୍ରୀ ବିଛା କେବେକେବେ ଉତ୍ତେଜିତ ହୋଇ ପୁରୁଷ ବିଛାକୁ ଖାଇଯାଏ ।

"ଫ୍ରଗ୍ ଫିସ୍"ର ଯୌନାଚରଣ ମଧ୍ୟ ଏହିପରି ପ୍ରାଣାନ୍ତକ । ନାରୀ ଫ୍ରଗ୍ ଫିସ୍ ବୁଲୁଥାଏ । ପୁରୁଷ ଫ୍ରଗ୍ ଫିସ୍ ଅଧିକାଂଶ ପୁରୁଷଙ୍କ ପରି ଲମ୍ପଟ ଏବଂ ଅଧୀର ହୋଇଥାଏ। ସ୍ତ୍ରୀ ମାଛ ପାଖରେ ପହଞ୍ଚିବା ମାତ୍ରେ ସେ ଉତ୍ତେଜିତ ହୋଇଉଠେ । ଅଥଚ ସ୍ତ୍ରୀ ମାଛଠାରେ କୌଣସି ଉତ୍ତେଜନା ନଥାଏ । ଉତ୍ତେଜିତ ଅଣ୍ଡିରା ମାଛ ମାଈ ମାଛର ମାଦକ ଦେଖା ଦେଉଥିବା ଶରୀରରେ ଦାନ୍ତ ଗଳାଇ ଦିଏ । ସେ ଦାନ୍ତ ସେମିତି ମାଈ ମାଛର ଶରୀରରେ ରହିଯାଏ । କାରଣ ତା ଶରୀରରୁ ଦାନ୍ତ ଆଉ ବାହାରି ପାରେ ନାହିଁ । ଯେମିତି ହେଉ ଦୁହେଁ କେଳି

କରନ୍ତି । ନିଶା ଛାଡ଼ି ଯିବା ପରେ ପୁରୁଷ ମାଛ ଦାନ୍ତ କାଢ଼ି ନେବାକୁ ଚେଷ୍ଟା କରେ । ଥରେ ନୁହେଁ ଅନେକ ଥର । କିନ୍ତୁ ସେ ସଫଳ ହୁଏ ନାହିଁ । ଖାଇବା ପିଇବା ବନ୍ଦ । କେତେ ଦିନ ଆଉ ସେ ବଞ୍ଚି ରହି ପାରିବ ? ଶେଷରେ ଶେଷ ନିଶ୍ୱାସ ତ୍ୟାଗ କରେ ।

ବିରାଡ଼ି କେବେକେବେ ବିକଳ ହୋଇ କାନ୍ଦେ । ଏ କାନ୍ଦ ତାହାର ଶାରୀରିକ ପୀଡ଼ା ଯୋଗୁଁ ନୁହେଁ, ବରଂ ଉତ୍ତେଜିତ ମନୋବ୍ୟଥାର ପରିଚାୟକ । ମାଙ୍କଡ଼ଙ୍କର କର୍ଣ୍ଣକଟୁ ଶବ୍ଦରୁ ସେମାନଙ୍କ ଭିତରେ ହେଉଥିବା ଅସାଧାରଣ ଉତ୍ତେଜନାର ପରିଚୟ ମିଳେ ।

ଝିଙ୍କ ଯେତେବେଳେ ନାଚକୁଦରେ ବ୍ୟସ୍ତ ଥାଏ, ସେତେବେଳେ ତାହାର ପ୍ରଣୟ ସମୟ ଆସିଛି ବୋଲି ଜଣାପଡ଼େ । ସେତେବେଳେ ସେ ଖାଇବା, ପିଇବା, ଶୋଇବା ପର୍ଯ୍ୟନ୍ତ ଭୁଲିଯାଇ ପାଗଳ ପରି ହୋଇଯାଏ । କାଠ ଖଣ୍ଡମାନ ମୁହଁରେ ଧରି ତାହାକୁ ଉପରକୁ ଫିଙ୍ଗେ ଓ ଧାଇଁଯାଏ । ଏହା ଦେଖି ମନେ ହୁଏ ସତେ ଯେପରି ସେ ଫୁଟବଲ ଖେଳରେ ବ୍ୟସ୍ତ ରହିଛି ।

ସାପର ପ୍ରଣୟ କେଳି ତାହାର ଆଲିଙ୍ଗନ ଆବଦ୍ଧ ଅବସ୍ଥାରୁ ଜଣାପଡ଼େ । ସେତେବେଳେ ସେ ଅତ୍ୟନ୍ତ ଭାବୁକ ଓ ଆବେଶଗ୍ରସ୍ତ ଅବସ୍ଥାରେ ଥାଏ । ସେହି ଏକାନ୍ତ ଅବସ୍ଥାରେ କାହାର ହସ୍ତକ୍ଷେପ ସେ ଆଦୌ ପସନ୍ଦ କରେ ନାହିଁ । କେହି ଲୁଚି ଛପି ତାହାକୁ ଦେଖୁଥିବାର ଜାଣିପାରିଲେ, ସାପ କ୍ରୋଧାନ୍ଧ ହୋଇ ପ୍ରାଣଘାତକ ଆକ୍ରମଣ କରିବାକୁ ଉଦ୍ୟତ ହୋଇଯାଏ ।

କେତେ ନରପଶୁ ଏପରି ଆବେଶଗ୍ରସ୍ତ ହୋଇ ଏକ ଅପରର ପ୍ରାଣ ନାଶ କରିଥାନ୍ତି । କେବେ କେବେ ଆବେଶରେ କେହି ନିଜ ପ୍ରାଣ ହରାଇଥାନ୍ତି ।

ହରିଣର ଋତୁକାଳରେ ସ୍ୱୟମ୍ବର ମଲ୍ଲଯୁଦ୍ଧ ରୂପ ଧାରଣ କରେ । ତାହାର ଶିଙ୍ଘ ଭାଙ୍ଗିଯାଏ, କ୍ଷତ ହୁଏ ଓ କେବେକେବେ ସେ ପ୍ରାଣ ହରାଇ ଥାଏ । ପରାଜିତ ହରିଣ ସହିତ ସଂପର୍କ ଛିନ୍ନ କରି ବିଜୟୀର ଅନୁଚରୀ ହେବା ସକାଶେ ହରିଣୀ ବିନା ଦୁଃଖରେ ସହଜ ସ୍ୱଭାବ ରକ୍ଷା କରେ । ଅଗଣିତ ପଶୁମାନଙ୍କର ମଧ୍ୟ ଏମିତି ଦୁର୍ଗତି ହୋଇଥାଏ । ସେମାନଙ୍କ ମଧ୍ୟରେ ପ୍ରାୟ ଅର୍ଦ୍ଧେକ ଏଇ କୁଚକ୍ରରେ ପଡ଼ି କ୍ଷତ ବିକ୍ଷତ ହୋଇ ମରିଥାନ୍ତି ।

କେବଳ ପୁରୁଷ ଏହି ସ୍ୱୟମ୍ବର ଯୁଦ୍ଧରେ ଲଢ଼ି ମରି କଷ୍ଟ ଭୋଗ କରିଥାନ୍ତି– ଏମିତି କିଛି କଥା ନାହିଁ । କେବେକେବେ ନାରୀ ମଧ୍ୟ ନରର ଅବିବେକୀ ସ୍ୱଭାବ ଯୋଗୁଁ ଉପଯୁକ୍ତ ଦଣ୍ଡଦିଏ ଓ ନଚାଏ ।

ଅଣ୍ଡିରା ଗରୁଡ଼ ମଲ୍ଲଯୁଦ୍ଧ କରି ତାହାର ପ୍ରେୟସୀକୁ ପରାସ୍ତ କରିବା ପରେ ହିଁ ପ୍ରଣୟକେଳି ପାଇଁ ସ୍ୱୀକୃତି ମିଳେ । ରତ୍ନମତୀ ମାଈ ଗରୁଡ଼ ଅଣ୍ଡିରା ଗରୁଡ଼କୁ ଆମନ୍ତ୍ରଣ କରେ ସତ । ଏହା ସହିତ ପିତା ହେବାର ଯୋଗ୍ୟତା ଥିଲେ ସେହି ପଦର ଲାଳସା କରିବା ଉଚିତ ବୋଲି ସେ ଆହ୍ୱାନ ଜଣାଏ । ସାମର୍ଥ୍ୟ ପରଖିବା ପାଇଁ ସ୍ତ୍ରୀ ପକ୍ଷୀ ମଲ୍ଲଯୁଦ୍ଧ କରେ ଓ ସେହି ଭୟାନକ ସଂଘର୍ଷରେ ପୁରୁଷ ପକ୍ଷୀର ପର ଉପୁଡ଼ି ଯାଏ । ଆହତ ହେବାରୁ ସେ ରକ୍ତରେ ଜୁଡୁବୁଡୁ ହୋଇଯାଏ । ଏପରି ଦୁର୍ଦ୍ଦଶା ହେବା ପରେ ସୁଦ୍ଧା ଯଦି ସେ ଯୁଦ୍ଧ କ୍ଷେତ୍ରରୁ ପଳାୟନ ନକରେ, ତେବେ ତା ଗଳାରେ ବରଣମାଳା ପଡ଼େ । ସେତେବେଳେ କେବଳ ବିବାହ ହୋଇ ନ ଥାଏ । ବରଂ ଘରକରଣାରେ ଥିବା ଦାୟିତ୍ୱ ବହନ କରିବାରେ ସ୍ତ୍ରୀ ପକ୍ଷୀକୁ ସାହାଯ୍ୟ କରିବା ଲାଗି ତତ୍ପର ହେବାକୁ ପଡ଼େ ।

୧୯୫୦ ମସିହାର କଥା । କେତେକ ବୈଜ୍ଞାନିକ ଏଞ୍ଜିଲର ମାଛ ବିଷୟରେ ଗଭୀର ଅଧ୍ୟୟନ ଆରମ୍ଭ କଲେ । ଭୂମଧ୍ୟ ସାଗରରେ ବାସ କରୁଥିବା ଏହି ଏଞ୍ଜିଲର ମାଛ ବିଷୟରେ ବିଶେଷ କିଛି ଜଣା ନ ଥିଲା । ଶରୀରସ୍ଥ ଅନେକ ଚକ୍ର, ଗ୍ରନ୍ଥି, ଗୁଚ୍ଛକ ଓ ଉପତ୍ୟିକା ବିଷୟରେ ବୈଜ୍ଞାନିକଗଣ ଯେମିତି ସାମାନ୍ୟ କିଛି ଜାଣିଛନ୍ତି, ସେମିତି ଏହି ମାଛ ବିଷୟରେ ଜଣାଥିଲା ।

ଗବେଷଣା ପାଇଁ ଯେତେ ମାଛ ଧରା ହେଲା, ତା ଭିତରେ ଗୋଟିଏ ହେଲେ ପୁରୁଷ ମାଛ ନଥିଲା । ଦିନେ ଜଣେ ମାଛ ବିଶେଷଜ୍ଞ ମାଛର ଅଙ୍ଗ ପ୍ରତ୍ୟଙ୍ଗ ବିଷୟରେ ଜାଣିବା ପାଇଁ ସ୍ଥିର କଲେ । ପରୀକ୍ଷା କରିବା ପରେ ଜଣାଗଲା ଯେ ଏଞ୍ଜିଲର ମାଛର ଡାହାଣ ଆଖି ଉପରେ ଏକ ଛୋଟ ମାଛ ପରି ଜୀବ ଲାଗି ରହିଛି । ଏହା ପରେ ହିଁ ମାଛ ବିଷୟରେ ବିଶେଷ ମହତ୍ତ୍ୱପୂର୍ଣ୍ଣ କଥା ଜଣା ପଡ଼ିଲା । ଏହି ଛୋଟ ଜୀବକୁ ପରୀକ୍ଷା କରିବା ପରେ ଜଣାଗଲା ଯେ ବୈଜ୍ଞାନିକଗଣ ଯାହାକୁ ଖୋଜୁଥିଲେ, ଏ ସେଇ ଜୀବ । ଏହି ଅଣ୍ଡିରା ଏଞ୍ଜିଲର ବିଚାରୀ ସ୍ତ୍ରୀ ମାଛର ମୁଣ୍ଡରେ ଲାଗିରହି ତାହାର ରକ୍ତ ଶୋଷଣ କରୁଥିଲା ।

ସ୍ତ୍ରୀ ମାଛର ଲମ୍ବ ୪୦ ଇଞ୍ଚ । ଭଗବାନ ତାହାର ପତିଦେବଙ୍କୁ କେବଳ ଚାରି ଇଞ୍ଚ ଲମ୍ବ କରି ଦେଖାଇ ଦେଲେ ଯେ ନାରୀକୁ କେବଳ ପ୍ରଜନନ ଓ ଶୋଷଣର ବସ୍ତୁ କରି ଦେଇଥିବା ପୁରୁଷ ବାଙ୍ଗରା ହେବା ଉଚିତ । ମାନବ ଇତିହାସରେ ଏହା ହିଁ ଦୃଷ୍ଟିଗୋଚର ହୋଇଥାଏ । ସଂସାରରେ ଯେତେ ଦେଶ ଏବେ ପ୍ରଗତିର ଚରମ ସୀମା ପର୍ଯ୍ୟନ୍ତ ଯାଇଛନ୍ତି, ସେ ସବୁ ଦେଶରେ ନାରୀର ପ୍ରଗତି ଉଦ୍ଦେଶ୍ୟରେ ଯଥେଷ୍ଟ ପଦକ୍ଷେପ ଗ୍ରହଣ କରାଯାଉଛି । କେବଳ ଭାରତୀୟମାନେ ହିଁ ନାରୀକୁ ଦାସୀ ଓ ଶିକ୍ଷାହୀନ କରି ସେମାନଙ୍କୁ ପରଦାରେ ରଖିଛନ୍ତି, ତାକୁ ରମଣୀ ରୂପେ ଉପଭୋଗ କରନ୍ତି । ଏହି କାରଣରୁ ପ୍ରଗତି କ୍ଷେତ୍ରରେ ସେମାନେ ଏଞ୍ଜିଲର ମାଛ ପରି ଖର୍ବକାୟ ହୋଇ ରହିଛନ୍ତି ।

ଆମ ଭିତରେ ଏ ଦୋଷ ଆସିଲା କେଉଁଠୁ ? ଏଞ୍ଜିଲର ମାଛ ବିଷୟରେ ଗବେଷଣା କରୁଥିବା ବୈଜ୍ଞାନିକମାନେ ଏ ପ୍ରଶ୍ନର ଉତ୍ତର ଦେଇଛନ୍ତି । ପୁରୁଷ ମାଛର ସ୍ୱଭାବ ଲକ୍ଷ୍ୟ କରିବା ପରେ ସେମାନେ କହିଛନ୍ତି ଯେ ତାହାର ଆଳସ୍ୟ ଓ ବାସନାପୂର୍ଣ୍ଣ ପ୍ରକୃତି କାରଣରୁ ସେ ଶୋଷଣ ପ୍ରିୟ ହୋଇଛି । ଜୀବନରେ ମାଧୁର୍ଯ୍ୟ ପାଇଁ କୌଣସି ସ୍ଥାନ ନ ଥିବା କାରଣରୁ ସେ ନିଜ ପତ୍ନୀର ରକ୍ତ ପାନ କରେ ।

ପୁରୁଷ ଏଞ୍ଜିଲର ମାଛକୁ ପାପୀ ଓ ଅପରାଧୀ କୁହାଯାଇ ପାରେ । କିନ୍ତୁ ଯେଉଁ ଲୋକମାନେ ବାସନା ରୂପେ, ଦାସୀ ଓ ସଂପଦ ରୂପେ ନାରୀର ମୂଲ୍ୟାଙ୍କନ କରିଛନ୍ତି ସେମାନଙ୍କୁ କ'ଣ ମନେ କରାଯିବ ? କ'ଣ କୁହାଯିବ ? ଆମେ ଅନ୍ତର୍ମୁଖୀ ହୋଇପାରିଲେ ଏହାର ନିର୍ଣ୍ଣୟ ହୋଇପାରିବ ।

କାମୁକତାର ବାହ୍ୟ ସ୍ୱରୂପ ଯେତେ ଆକର୍ଷଣୀୟ ହେଉ ନା କାହିଁକି, ତାହାର କଳେବରରେ ବିଷ ଓ ବିନାଶ ବ୍ୟତୀତ ଅନ୍ୟ କିଛି ନାହିଁ । ଆଫ୍ରିକାରେ ଏକ ଅତି ସୁନ୍ଦର ଫୁଲ ଦେଖାଯାଏ । ସେ ଫୁଲ ପ୍ରତି ଆକୃଷ୍ଟ ହୋଇ କୌଣସି ପକ୍ଷୀ ତା ଉପରେ ବସିବା ମାତ୍ରେ ସେ ଫୁଲ ଧୀରେ ଧୀରେ ବନ୍ଦ ହୋଇ ଆସେ ଓ ନିଜର ସରୁସରୁ କଣ୍ଟାକୁ ତା ଦେହରେ ଫୋଡ଼ିଦିଏ । ବାରମ୍ବାର ଚେଷ୍ଟା କଲେ ସୁଦ୍ଧା ପକ୍ଷୀ ତା କବଳରୁ ମୁକୁଳି ପାରେ ନାହିଁ । ପୂରା ରକ୍ତ ଶୋଷି ନେବା ପରେ ଫୁଲ ପକ୍ଷୀକୁ ମୁକ୍ତ କରି ଦିଏ । କାମୁକ ଉଚ୍ଛୃଙ୍ଖଳ ସ୍ୱଭାବ ଏପରି ବିନାଶକାରୀ ପ୍ରବୃତ୍ତି ଅଟେ । ପ୍ରକୃତିର ନାନା ସ୍ଥାନରେ ଏହା ଦେଖିବାକୁ ମିଳେ ।

ଚୀନ ଦେଶରେ ପାରାଡାଇଜ୍ ନାମକ ଏକ ପ୍ରକାର ମାଛ ଅଛି । ସେ ନିଜ ପାଟି ଭିତରୁ ଏକ ବିଶେଷ ଧରଣର ଅଠାଳିଆ ରସାୟନ ଯୁକ୍ତ ଫୋଟକା ବାହାର କରେ । ଅଳ୍ପ ସମୟ ଭିତରେ ବହୁ ସଂଖ୍ୟକ ଫୋଟକା ଏକାଠି ହୋଇଯାଏ । ସେ ଫୋଟକାର ଗୋଟିଏ ପାଖକୁ ଛିଦ୍ର କରି ଭିତରେ ଭିତରେ ଏମିତି କାମ କରେ ଯେ ଫୋଟକାଗୁଡ଼ିକ ଅନେକ ଘର ଥିବା ଏକ ସହର ପରି ଦେଖାଯାନ୍ତି । ଏହା ପରେ·ସ୍ତ୍ରୀ ମାଛ ଅଣ୍ଡାଦିଏ । ଅଣ୍ଡାଗୁଡ଼ିକ ସେହି ଫୋଟକା ସହର ଭିତରେ ରଖାଯାଏ । ସେ ନିଜେ ଅଣ୍ଡାକୁ ପହରା ଦିଏ । ଦୁର୍ଗର କୌଣସି ଦ୍ୱାରବାଟ ଦେଇ ଶାବକମାନେ ବାହାରି ନ ଯିବା ପାଇଁ ସେ ସାବଧାନ ହୋଇଥାଏ । ଏହିପରି ତାହାର ବଂଶବୃଦ୍ଧି ହୁଏ ।

ଆମେରିକାର ଦକ୍ଷିଣାଂଶରେ ପାଣିରେ ବାସ କରୁଥିବା କଇଁଛ ପରି ଦେଖାଯାଉଥିବା ଆଲିଗେଟର ସ୍ନାଇପର ଏକ ଚତୁର ପ୍ରାଣୀ ଅଟେ । ସେ ନିଜ ଜିଭ ବାହାର କରି ତାହାକୁ ଆଗପଛ, ଉପର ତଳ କରି ହଲାଏ । ଦେଖିଲେ, ଏ ଜିଭ ଏକ ଅଲଗା ଜୀବ ପରି ଜଣାପଡ଼େ । ତାହା ଦେଖି କେତେକ ମାଛ ତାହା ଖାଇବା ଲାଳସାରେ ଧାଇଁ ଆସନ୍ତି । ମାଛ ନିକଟକୁ ଆସିବା ମାତ୍ରେ ଆଲିଗେଟର ସ୍ନାଇପର ସେମାନଙ୍କୁ ଧରି ଖାଇଦିଏ ।

ଶରୀରରେ ମଧ ଏହା ଘଟିଥାଏ । ଇନ୍ଦ୍ରିୟମାନଙ୍କରେ ଥିବା ବିଷୟ ଲାଳସାରେ ଭ୍ରାନ୍ତ ଜୀବ ତୃପ୍ତି ଲାଭ କରିବା ଉଦ୍ଦେଶ୍ୟରେ ଧାଇଁ ଆସେ ଏବଂ କାଳ ବାରମ୍ବାର ସେମାନଙ୍କୁ କବଳିତ କରେ । ଅଳ୍ପ କେତେକ ବୁଦ୍ଧିମାନ ବ୍ୟକ୍ତି ଇନ୍ଦ୍ରିୟର ଏହି ଆସକ୍ତିକୁ ଆତ୍ମାର ବିଷୟ ମନେ ନ କରି ଶରୀରର ବିଷୟ ବୋଲି ବୁଝିଥାନ୍ତି ଏବଂ ତାହାଠାରୁ ଦୂରରେ ରହି ଆତ୍ମରକ୍ଷା କରିଥାନ୍ତି ।

ନଦୀରେ ବାସ କରୁଥିବା ଘଡ଼ିଆଳ କୁମ୍ଭୀର କେତେ କ୍ରୁର ଓ କେତେ ବୁଦ୍ଧିମାନ । ଶିକାର ଧରିବା ପାଇଁ ସେ କୂଳକୁ ଚାଲି ଆସେ ଓ ସ୍ଥିର, ନିଶ୍ଚେଷ୍ଟ ଭାବେ ପଡ଼ି ରହେ । ମନେ ହୁଏ, ସତେ ଯେମିତି ସେଠାରେ ପଥର ବା କାଠ ଖଣ୍ଡେ ପଡ଼ି ରହିଛି । କୌଣସି ମାଛ ତା ନିକଟକୁ ଆସିବା କ୍ଷଣି ସେ ତାହାକୁ ଧରି ଉଦରସ୍ଥ କରି ଦିଏ ।

ମନୁଷ୍ୟର ଇନ୍ଦ୍ରିୟମାନେ ସେତିକି ଧୂର୍ତ୍ତ ଓ ଚତୁର । ସାଧାରଣତଃ ସେଗୁଡ଼ିକ

ନିର୍ଜୀବ ଦେଖାଯାଇଥାନ୍ତି । ତେଣୁ ମନୁଷ୍ୟ ଆହାର ବିହାର ତଥା ପରିସ୍ଥିତି ବିଷୟରେ ସତର୍କ ହୋଇ ନ ଥାଏ । ଖାଇବା ପିଇବାରେ କିମ୍ବା ଅନ୍ୟ କୌଣସି କାମରେ ସୀମା ଲଙ୍ଘନ କରିବା ମାତ୍ରେ ଏହି ନିଷ୍ପ୍ରାଣ ମନେ ହେଉଥିବା ଇନ୍ଦ୍ରିୟର ଉତ୍ତେଜନା ମନୁଷ୍ୟକୁ କବଳିତ କରିଦିଏ । ଏହା ପରେ ତା କବଳରୁ ମୁକ୍ତି ଲାଭ କରିବା କଠିନ ହୋଇପଡ଼େ । ଜ୍ଞାନୀ ଏବଂ ବିଚାରଶୀଳ ଲୋକମାନେ ପ୍ରଥମରୁ ସତର୍କ ହୋଇଥାନ୍ତି । ସେମାନେ ସଂଯତ ଭାବରେ ମର୍ଯ୍ୟାଦା ଭିତରେ ରହି ଜୀବନ ଯାପନ କରିଥାନ୍ତି । ତେଣୁ ସେମାନେ ଇନ୍ଦ୍ରିୟର ପ୍ରଭାବରୁ ରକ୍ଷା ପାଇଥାନ୍ତି ଏବଂ ନିଜର ଶକ୍ତି, ଶାନ୍ତି ଓ ସମ୍ମାନକୁ ସୁରକ୍ଷିତ କରି ପାରନ୍ତି ।

ଇଉରୋପରେ ସ୍ପାରୋ ନାମକ ଏକପ୍ରକାର ପକ୍ଷୀ ଦେଖାଯାନ୍ତି । ଝିଣ୍ଟିକା ତାହାର ପ୍ରଧାନ ଖାଦ୍ୟ । କିନ୍ତୁ ଝିଣ୍ଟିକା ମିଳିବ କିପରି ? ସେ ଚଢ଼େଇ ଏକ ସ୍ଥାନରେ ଚୁପ୍ ହୋଇ ବସେ ଓ ଝିଣ୍ଟିକା ପରି ଶବ୍ଦ କରେ । ସେ ଶବ୍ଦ ଶୁଣି ଝିଣ୍ଟିକାଦଳ ତା ନିକଟକୁ ଆସିଯାନ୍ତି ଓ ଚଢ଼େଇର ଆହାର ରୂପେ ତାହାର ପେଟ ଭିତରକୁ ଚାଲିଯାନ୍ତି ।

ଇନ୍ଦ୍ରିୟ ଜନିତ ସୁଖର ଦଶା ଏମିତି ହୋଇଥାଏ । ଇନ୍ଦ୍ରିୟମାନେ କୁତୁକୁତୁ କଲେ, ତାହାର ସଂପର୍କ ଶରୀର ସହିତ ରହିଛି ବୋଲି ମନୁଷ୍ୟ ଜାଣି ପାରେ ନାହିଁ । ସେଗୁଡ଼ିକୁ ସେ ନିଜର ସ୍ୱଜନ ମନେ କରି, ସେଗୁଡ଼ିକର ତୃଷା ଶାନ୍ତ କରିବାରେ ଲାଗିପଡ଼େ । ତେଣୁ ଆତ୍ମାକୁ ଅଧଃପତନର ଗର୍ତ୍ତ ଭିତରକୁ ଠେଲି ଦିଏ ।

ମାୟାର ଏହି ଖେଳକୁ ବୁଝିପାରୁଥିବା ଏବଂ ତାହାଠାରୁ ଦୂରରେ ରହୁଥିବା ବ୍ୟକ୍ତି ହିଁ ବୁଦ୍ଧିମାନ, ବିଚାରଶୀଳ ଓ ଆତ୍ମନିଷ୍ଠ ହୋଇଥାଏ । ତାହାର ଜୀବନ ସଫଳ ଓ ସାର୍ଥକ ବୋଲାଏ । ପ୍ରକୃତିର ଅଗଣିତ ଉଦାହରଣ ମନୁଷ୍ୟକୁ ଚିନ୍ତା କରିବା ପାଇଁ ବାଧ୍ୟ କରେ । ପାଶବିକ ପ୍ରବୃତ୍ତି ଆମକୁ ପ୍ରଭାବିତ କରିବା ଉଚିତ ହେବ କି ? ସଂଯତ ଓ ମର୍ଯ୍ୟାଦାଯୁକ୍ତ ଜୀବନ ଯାପନ କରି ମନୁଷ୍ୟ ଶକ୍ତିମାନ ଓ ସାମର୍ଥ୍ୟଯୁକ୍ତ ହୋଇଥାଏ ଏବଂ ସମସ୍ତଙ୍କ ସମ୍ମାନର ପାତ୍ର ହୁଏ । କାମ ବିଜ୍ଞାନର ଏହି ପରିଷ୍କୃତ ସ୍ୱରୂପ ବିଷୟରେ ଜନସାଧାରଣଙ୍କୁ ବୁଝାଇବା ଏ ଯୁଗର ସବୁଠାରୁ ବଡ଼ ଆବଶ୍ୟକତା ଅଟେ ।

***

# ନର ଓ ନାରୀର ମିଳନ–ଏକ ଅସାମାନ୍ୟ ପ୍ରକ୍ରିୟା

ସାଧାରଣ ସାମାଜିକ ସ୍ତରରେ ନର ଓ ନାରୀ, ଅଲଗା ଅଲଗା ହୋଇ ରହିବାର ଆବଶ୍ୟକତା ନାହିଁ । କିନ୍ତୁ ଯୌନସଂପର୍କ ବିଷୟରେ ଅତ୍ୟନ୍ତ ସାବଧାନତା ଅବଲମ୍ବନ କରିବା ଆବଶ୍ୟକ । ମସ୍ତିଷ୍କ ପରେ ଜନନେନ୍ଦ୍ରିୟ ଦ୍ୱିତୀୟ ସ୍ଥାନ ଅଧିକାର କରେ । ଏ ଦୁଇକେନ୍ଦ୍ରକୁ ଶକ୍ତି ସଂସ୍ଥାନ କୁହାଯାଇପାରେ । ପୃଥିବୀର ଦୁଇ ପ୍ରାନ୍ତକୁ ମେରୁ କୁହାଯାଏ । ଏହି ମେରୁ ପ୍ରଦେଶରେ ଅତି ରହସ୍ୟମୟ ପ୍ରକୃତିର ଶକ୍ତିଧାରାର ବୀଜ ଅବସ୍ଥିତ । ଏହି କାରଣରୁ ପୃଥିବୀ ନିଜ କକ୍ଷରେ ଭ୍ରମଣ କରୁଛି, ସୂର୍ଯ୍ୟର ପରିକ୍ରମା କରୁଛି, ମହାସୂର୍ଯ୍ୟକୁ ନିଜର ସୌରମଣ୍ଡଳ ସହିତ ଭ୍ରମଣ କରାଉଛି । ଋତୁ ପରିବର୍ତ୍ତନଠାରୁ ଆରମ୍ଭ କରି ବନସ୍ପତି ବର୍ଦ୍ଧନ, ଖଣିଜ ଦ୍ରବ୍ୟର ପ୍ରସୁତି ପର୍ଯ୍ୟନ୍ତ ସମସ୍ତ ପ୍ରକ୍ରିୟା ଏଇ ଦୁଇ ମେରୁ ପ୍ରଦେଶରେ ସନ୍ନିହିତ ଶକ୍ତି ବୀଜ କାରଣରୁ ସମ୍ଭବ ହୋଇଥାଏ । ମନୁଷ୍ୟ ପିଣ୍ଡରେ ମଧ୍ୟ ପୃଥିବୀ ପରି ମସ୍ତିଷ୍କ ଉତ୍ତମ ମେରୁ ଓ ମୂଳାଧାର ଦକ୍ଷିଣ ମେରୁ ଅଟେ । ଜୀବନର ଚେତନାତ୍ମକ, ବୌଦ୍ଧିକ ଓ ଭାବନାତ୍ମକ କ୍ରିୟାକଳାପର କେନ୍ଦ୍ର ହେଉଛି ମସ୍ତିଷ୍କ । ଶରୀରରେ ଯାହା କିଛି ଉତ୍ତମ ଓ ଆକର୍ଷଣୀୟ ଦେଖା ଦେଇଥାଏ, ତାହାର କେନ୍ଦ୍ର ଜନନେନ୍ଦ୍ରିୟର ପୃଷ୍ଠଭୂମିରେ ଥାଏ । ମସ୍ତିଷ୍କରେ ବିକୃତି ଆସିଲେ ବ୍ୟକ୍ତି ବୁଦ୍ଧିହୀନ ହୋଇ ପାଗଳ ପରି ନିଜ ପାଇଁ ତଥା ଅନ୍ୟମାନଙ୍କ ପାଇଁ ନିରର୍ଥକ ହୋଇଯାଏ । ଠିକ୍ ସେମିତି ମୂଳାଧାରରେ ଥିବା କାମବୀଜ ବିକୃତ ହୋଇଗଲେ ସ୍ନାୟୁମଣ୍ଡଳଠାରୁ ଆରମ୍ଭ କରି ପରିପାକ ଯନ୍ତ୍ର ପର୍ଯ୍ୟନ୍ତ ସବୁ କାର୍ଯ୍ୟକାଳପ ବିକୃତ ହୋଇଯାଏ । ତେଣୁ ଅତି ସାବଧାନ ହୋଇ ଦୂରଦର୍ଶିତାର ସହିତ ଏ ଦୁଇ ଶକ୍ତିକେନ୍ଦ୍ରର ଉପଯୋଗ କରିବା ଆବଶ୍ୟକ । ଏହାର ଉପଯୋଗରେ ଭୁଲ ହୋଇଗଲେ, ତାହା ପ୍ରାଣଘାତକ ହୋଇଯାଏ ।

ପ୍ରକୃତି ମସ୍ତିଷ୍କର ବାହ୍ୟ ଅଂଶକୁ ହାଡ଼ର ଦୃଢ଼ ଦୁର୍ଗଭିତରେ ନିରାପଦ

ଭାବରେ ରଖିଛି । ଏହି କାରଣରୁ କୌଣସି ବାହ୍ୟ ଘାତକ ତତ୍ତ୍ୱ, ଶୀତ ଓ ଗ୍ରୀଷ୍ମର ପ୍ରଭାବ ତାହାକୁ ପ୍ରଭାବିତ କରି ପାରେ ନାହିଁ । ମନୁଷ୍ୟ ନିଜର ଚିନ୍ତନ, ମନନ, ସ୍ୱାଧ୍ୟାୟ, ସତ୍‌ସଙ୍ଗ ମାଧ୍ୟମରେ ତାହାକୁ ପ୍ରଭାବିତ କରିପାରେ । ମସ୍ତିଷ୍କ ଯେଉଁ ଦିଗରେ ଗତି କରେ, ଜୀବନର ସ୍ୱରୂପ ସେହିପରି ହୋଇଯାଏ ଏବଂ ସେହି ଆଧାର ଉପରେ ମନୁଷ୍ୟ ଉନ୍ନତି ଅବନତି, ସୁଖ ଦୁଃଖର ପରିଣାମ ଲାଭ କରେ । ମସ୍ତିଷ୍କକୁ ମର୍ମସ୍ଥଳ କୁହାଯାଏ । ସେଥିରେ ଥିବା ବ୍ରହ୍ମରନ୍ଧ୍ରରେ କ୍ଷୀରସାଗର ନିବାସୀ ବିଷ୍ଣୁ ବିରାଜମାନ ଅଛନ୍ତି । ଏହି ପୌରାଣିକ ଅଳଙ୍କାରରେ ଯେଉଁ ରହସ୍ୟ ଅଛି, ତାହା ହେଉଛି– ସମଗ୍ର ଦିବ୍ୟଶକ୍ତି, ସିଦ୍ଧି ଓ ବିଭୂତିର କେନ୍ଦ୍ର ହେଉଛି ମସ୍ତିଷ୍କ । ତାହାକୁ ସୁସ୍ଥ ଏବଂ ସମୁନ୍ନତ ଅବସ୍ଥାରେ ରଖିବା ସକାଶେ ବିଦ୍ୟା ଅଧ୍ୟୟନଠାରୁ ଆରମ୍ଭ କରି ବିଚାର ବିନିମୟ ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ଆମକୁ ଅନେକ କିଛି କରିବାକୁ ହୁଏ । ତେବେ ହିଁ ମସ୍ତିଷ୍କରୁ ଆମେ ସମୁଚିତ ଉପକାର ପାଉ । କୁସଙ୍ଗ, ଦୁର୍ବୁଦ୍ଧି ଏବଂ ଅଶୁଭ ଚିନ୍ତନ ଦ୍ୱାରା ଯଦି ଆମେ ତାହାକୁ ବିକୃତ କରିଦେଉ, ତେବେ ଉତ୍କର୍ଷର ସମ୍ଭାବନା ସମାପ୍ତ ହୋଇ ଭବିଷ୍ୟତକୁ ଅନ୍ଧକାରମୟ କରାଯାଇଛି ବୋଲି ବୁଝିନେବାକୁ ହେବ ।

ଜନନେନ୍ଦ୍ରିୟର ମହତ୍ତ୍ୱ ମଧ୍ୟ ଠିକ୍ ସେମିତି । କେବଳ ମୂତ୍ରତ୍ୟାଗ କିମ୍ବା ଘୃଣ୍ୟ ମନୋରଂଜନ ଉଦ୍ଦେଶ୍ୟରେ ତାହାକୁ ଗଠନ କରାଯାଇ ନାହିଁ । ସ୍ୱାସ୍ଥ୍ୟ ରକ୍ଷାଠାରୁ ଆରମ୍ଭ କରି ଦୀର୍ଘଜୀବନ ଲାଭ ପର୍ଯ୍ୟନ୍ତ ସବୁ ସୂତ୍ର ତାହା ଭିତରେ ବୀଜରୂପେ ବିଦ୍ୟମାନ ରହିଛି । ତେଣୁ ତାହାକୁ ମଧ୍ୟ ଜଙ୍ଘ ପରି ମାଂସଳ ଏବଂ ଅତି କୋମଳ ପରିଧି ଭିତରେ ରଖା ଯାଇଛି । ଏହି ସୁରକ୍ଷାତ୍ମକ ବ୍ୟବସ୍ଥା ପଛରେ ପ୍ରକୃତିର ନିର୍ଦ୍ଦେଶ ସନ୍ନିହିତ । ଅତି ସତର୍କତା ଓ ଦୂରଦର୍ଶିତା ସହିତ ଏହି ମର୍ମସ୍ଥଳର ଉପଯୋଗ କରାଯିବା ଆବଶ୍ୟକ । ନିମ୍ନସ୍ତରର କ୍ରିୟାକଳାପରେ ଏହାକୁ ଖେଳଣା ରୂପେ ବ୍ୟବହାର କରି ନିଜ ଶାରୀରିକ କ୍ଷମତା ଉପରେ କୁଠାରଘାତ କରିବା ସର୍ବଥା ଅନୁଚିତ ।

ପୁରୁଷ ଓ ନାରୀର ସାଧାରଣ ମିଳନ ଯେତିକି ଉପଯୋଗୀ, ବାସନାତ୍ମକ ସଂପର୍କରେ ସେତିକି ବିପଦ ମଧ୍ୟ ରହିଛି । ଉଭୟଙ୍କର ସ୍ୱରୂପ ଓ ମହତ୍ତ୍ୱ ପୃଥକ ।

ବ୍ୟକ୍ତି ସାନ୍ନିଧ ଉପରେ କଟକଣା ନ ରଖି ଯୌନ ମିଳନ ଉପରେ କଟକଣା ଆରୋପ କରାଯିବା ଦରକାର । ଗୋଟିଏ ବିଷୟ ମନେ ରଖିବା ଉଚିତ ଯେ ବାସନା ଉତ୍ତେଜନା ଅଲଗା କଥା, ସାମାଜିକ ନରନାରୀ ସଂପର୍କ ସହିତ ଏହା ବିଶେଷ ରୂପେ ସଂପୃକ୍ତ ନୁହେଁ । ପୁରୁଷ ଦୋକାନୀ ପାଖରୁ ଜିନିଷ କିଣିବା ପାଇଁ ଦିନସାରା ନାରୀ ଗରାଖମାନେ ଆସିଥାନ୍ତି । ଜିନିଷ କିଣିବାବେଳେ ସେମାନେ କଥାବାର୍ତ୍ତା କରନ୍ତି । ଏହା ଫଳରେ କୌଣସି ବିକାର ଉତ୍ପନ୍ନ ହୋଇ ନଥାଏ କିମ୍ବା କେହି କାହା ପ୍ରତି ଆକୃଷ୍ଟ ହୋଇ ନ ଥାନ୍ତି । ଯେଉଁମାନଙ୍କ ମନରେ ଯୌନ ସଂପର୍କର ଅଭିଳାଷ ଥାଏ, ସେଠାରେ ଆକର୍ଷଣ ଉତ୍ପନ୍ନ ହୋଇଥାଏ, ଏହା ପୁଣି ବିଶେଷ ମାନସିକ ଅବସ୍ଥା କାରଣରୁ । ପ୍ରଥମରୁ ଯଦି ଏହି ଭାବସ୍ଥଳକୁ ନିର୍ମଳ କରାଯାଇପାରେ, ତେବେ ନବ ଯୌବନର କଥା ଥାଇ ସୁଦ୍ଧା, ଆଗରେ ଥିବା ରୂପବାନ ପାଇଁ ମଧ କୌଣସି ଆକର୍ଷଣ ସୃଷ୍ଟି ହେବ ନାହିଁ ।

ଯୌନ ସଂସ୍ଥାନରେ ଅଦ୍‌ଭୁତ ବିଦ୍ୟୁତ୍ ଧାରା ପ୍ରବାହିତ କରୁଥିବା ଶକ୍ତିକେନ୍ଦ୍ର ରହିଛି । ଏହାକୁ ମୂଳାଧାର ଚକ୍ର କୁହାଯାଏ । ଏହି କାରଣରୁ ଏତେ ସାବଧାନତା ଆବଶ୍ୟକ । ବହୁତ ବୁଝିଶୁଝି ଏପରି ନାମକରଣ କରାଯାଇଛି । ଏହା ହିଁ ଶରୀର ଭିତରେ କାମ କରୁଥିବା ସମଗ୍ର କ୍ରିୟାକଳାପ, ଉତ୍ସାହ, ସ୍ଫୂର୍ତ୍ତି, କୋମଳତା, ଆକର୍ଷଣ, ଆରୋଗ୍ୟ, ଦୀର୍ଘଜୀବନର ମୂଳଭୂତ ଆଧାର ଅଟେ । ଅବାଞ୍ଛନୀୟ ବ୍ୟବହାର ଦ୍ୱାରା ଆମେ କାମ କ୍ଷମତାକୁ ଏକପ୍ରକାର ନଷ୍ଟଭ୍ରଷ୍ଟ କରିଦେଉ ।

ପୁରୁଷଠାରେ ପ୍ରାଣ ଓ ନାରୀଠାରେ ରୟି ଶକ୍ତିର ପ୍ରାଧାନ୍ୟ ଥାଏ । ଆଧ୍ୟାତ୍ମିକ ଭାଷାରେ ତାହାକୁ ଅଗ୍ନି ଓ ସୋମ କୁହାଯାଏ । ବିଜ୍ଞାନ ପରିଭାଷା ଅନୁସାରେ ତାହା ଧନ ଓ ଋଣ ବିଦ୍ୟୁତ୍ ପ୍ରବାହ ନାମରେ ନାମିତ । ସ୍ୱଭାବତଃ ଏଥିରେ ଆକର୍ଷଣ ରହିଥାଏ । ଏକ ଅପରର ସମୀପକୁ ଆସି ନିଜର ଅପୂର୍ଣ୍ଣତାକୁ ପୂର୍ଣ୍ଣ କରିବା ସକାଶେ ଇଚ୍ଛା କରିଥାନ୍ତି । ବାପ ବା ଭାଇ ନ ଥିବା ଝିଅ କିମ୍ବା ମା' ଭଉଣୀ ନଥିବା ପୁଅ ମାନସିକ ଦୃଷ୍ଟିରୁ ଅପୂର୍ଣ୍ଣ ଏବଂ ଅବିକଶିତ ହୋଇଥାନ୍ତି- ଏହା ସମସ୍ତେ ଜାଣନ୍ତି । ପ୍ରତିପକ୍ଷୀୟ ବର୍ଗର ସଂପର୍କ ବ୍ୟକ୍ତିତ୍ୱ ବିକାଶର ଅନେକ ଦ୍ୱାର ଉନ୍ମୁକ୍ତ କରିଦିଏ । ଏକାକୀ, ଅଲଗା ଅଲଗା ଭାବରେ ଥିବା ଜୀବନକ୍ରମ

କୁଣ୍ଠିତ ଏବଂ ମୂର୍ଚ୍ଛିତ ହୋଇପଡ଼େ । ବିଧବା ଓ ପତ୍ନୀହୀନଙ୍କ ମୃତ୍ୟୁ ସଂଖ୍ୟା, ରୋଗ ପ୍ରବଣତା ଓ ଶାରୀରିକ ଦୁର୍ବଳତା ବିବାହିତଙ୍କ ତୁଳନାରେ ଖୁବ୍ ବେଶୀ । ପରଦାରେ ରହୁଥିବା ନାରୀମାନେ ସବୁ ଦୃଷ୍ଟିରୁ ଅନୁନ୍ନତ ହୋଇଥାନ୍ତି । ଏହା ସାଧାରଣ ପ୍ରତିପକ୍ଷୀୟ ସଂପର୍କରୁ ବଞ୍ଚିତ ହେବାର କୁପରିଣାମ ଅଟେ । ଜନ ସଂପର୍କ କ୍ଷେତ୍ରରେ ଯଦି ପୁରୁଷ-ନାରୀ ମଧ୍ୟରେ ବିଘ୍ନ ଆରୋପ କରା ନଯାଏ, ତେବେ ଏହା ଫଳରେ ବ୍ୟକ୍ତିତ୍ୱ ବିକାଶରେ କୌଣସି ବାଧା ଦେଖାଯିବ ନାହିଁ, ବରଂ ସାହାଯ୍ୟ ମିଳିବ ।

ମନରେ କାମବିକାର ଜାଗ୍ରତ ହେଲେ ପ୍ରତିପକ୍ଷୀୟ ବର୍ଗ ସହିତ ସାଧାରଣ ସଂପର୍କର ମର୍ଯ୍ୟାଦା ଲଙ୍ଘନ କରି ଯୌନସଂପର୍କ ସ୍ଥାପନ କରିବାର ଅଭିଳାଷ ଜନ୍ମ ନିଏ । ଉଭୟ ବିଦ୍ୟୁତ୍‌ଧାରା ସମୀପବର୍ତ୍ତୀ ହେବା ପାଇଁ ବ୍ୟାକୁଳ ହୋଇ ଉଠନ୍ତି । ଏହାଫଳରେ ସାମାଜିକ କାମବିକୃତି ପ୍ରତ୍ୟକ୍ଷ ଭାବରେ ବିସ୍ତୃତ ହୋଇଯାଏ । ଶାରୀରିକ ଓ ମାନସିକ ଅବ୍ୟବସ୍ଥା ମଧ୍ୟ କିଛି କମ୍ ଦେଖାଯାଇ ନଥାଏ । ବ୍ୟଭିଚାର ପଛରେ ଏକ ସ୍ପଷ୍ଟ ତଥ୍ୟ ରହିଛି । ସାଧାରଣ ସ୍ତରର ବ୍ୟକ୍ତି ନିଜ ଦାମ୍ପତ୍ୟ ଜୀବନ ଓ ପରିବାର ପ୍ରତି ନିଷ୍ଠାବାନ ହୋଇ ନ ଥାନ୍ତି । ଅନ୍ୟ ଦିଗରେ ଆକର୍ଷଣ ଥିବା କାରଣରୁ ସାଧାରଣତଃ କୌଣସି ସଦ୍‌ଗୃହସ୍ଥଠାରୁ ଯେଉଁ ସ୍ନେହ ଓ ସୌଜନ୍ୟ ଆଶା କରାଯାଏ, ପରିବାରର ଲୋକେ ସେଥିରୁ ବଞ୍ଚିତ ହୋଇଥାନ୍ତି । ପରିବାର ବ୍ୟବସ୍ଥାରେ ବିକୃତି ନ ଆସିବା ପାଇଁ ଏବଂ ଗୃହସ୍ଥ ନିଜ ପରିଧି ଭିତରେ ରହିବା ପାଇଁ ବ୍ୟଭିଚାରକୁ ହେୟ ମନେ କରାଯାଇଛି । କିନ୍ତୁ ଏହା କୌଣସି ଅବିଚ୍ଛିନ୍ନ ମର୍ଯ୍ୟାଦା ନୁହେଁ । ଆବଶ୍ୟକତା ଅନୁସାରେ ଏଥିରେ ପରିବର୍ତ୍ତନ କରାଯାଇ ପାରେ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଜର୍ମାନୀର ଅସଂଖ୍ୟ ପୁରୁଷ ମରିଗଲେ । ନାରୀମାନଙ୍କ ସଂଖ୍ୟା ଅଧିକ ହୋଇଗଲା । ତତ୍‌କାଳୀନ ପରିସ୍ଥିତି ପ୍ରତି ଦୃଷ୍ଟି ଦେଇ ଜଣେ ପୁରୁଷ ଏକାଧିକ ପତ୍ନୀ ରଖିବା ସକାଶେ ଆଇନ ବ୍ୟବସ୍ଥାରେ ପରିବର୍ତ୍ତନ କରାଗଲା । ଖ୍ରୀଷ୍ଟ ଧର୍ମାବଲମ୍ବୀ ଦେଶମାନଙ୍କରେ ଏକ ପତ୍ନୀ ଓ ଏକ ପତିର ଆଇନ ରହିଛି । ଡେରାଡୁନ୍ ଜିଲ୍ଲାର ଜୌନସାର ବାବର କ୍ଷେତ୍ରର ପାହାଡ଼ିଆ ଅଞ୍ଚଳରେ ଏକ ପ୍ରଥା ପ୍ରଚଳିତ । ଏହି ପ୍ରଥା ଅନୁସାରେ

ପରିବାରରେ କେବଳ ବଡ଼ ଭାଇର ବିବାହ ହୋଇଥାଏ । ଯେଉଁ ପତ୍ନୀ ସେ ଘରକୁ ଆସେ, ସେ ସବୁ ସାନ ଭାଇଙ୍କର ଉପପତ୍ନୀ ରୂପେ ରହେ । ସନ୍ତାନମାନେ ସେହି ଜନ୍ମଦାତାମାନଙ୍କୁ, ବଡ଼ବାପା, ମଝିଆଁ ବାପା, ଛୋଟ ବାପା କହି ସମ୍ବୋଧନ କରିଥାନ୍ତି । ସେଠାରେ କେହି ଏପରି ବିବାହ ପଦ୍ଧତିକୁ ବ୍ୟଭିଚାର ବୋଲି କହେ ନାହିଁ । ଏହାକୁ ଅନୀତି ମନେ କରାଯାଏ ନାହିଁ । ସେମାନଙ୍କ ମତରେ ଆମେ ପଞ୍ଚ ପାଣ୍ଡବଙ୍କ ସନ୍ତାନ ଏବଂ ପାଣ୍ଡବମାନେ ଗୋଟିଏ ଦ୍ରୌପଦୀଙ୍କ ସହିତ ନିଜର ଦାମ୍ପତ୍ୟ ଜୀବନ ଅତିବାହିତ କରିଥିଲେ । ଯେଉଁ ନୀଚସ୍ତରର ବହୁପତି ବା ବହୁପତ୍ନୀର ସଂପର୍କ ରହିଛି, ତାହାକୁ ସାମାଜିକ ସ୍ତରର ପାରିବାରିକ ଜୀବନରେ ବିକୃତି ଉତ୍ପନ୍ନ କରୁଥିବା ପାପ ବୋଲି କୁହାଯିବ । ଯଦି ଏପରି ଅବ୍ୟବସ୍ଥା କୌଣସିଠାରେ ନଥାଏ ଓ ସଦ୍‌ଭାବର ସହିତ ଗୃହସ୍ଥଜୀବନ ଯାପନ କରାଯାଉଥାଏ, ତେବେ ଯେଉଁ କାରଣରୁ ଅନେକ ଦାମ୍ପତ୍ୟ ଜୀବନକୁ ଗର୍ହିତ ବା ବର୍ଜିତ ମନେ କରାଯାଇଥାଏ, ସେହି ଦୋଷର ପରିମାର୍ଜନ ହୋଇଯାଏ । କୃଷ୍ଣ ବହୁପତ୍ନୀ ଓ ଦ୍ରୌପଦୀ ବହୁପତି ବ୍ୟବସ୍ଥାର ସଫଳ ପ୍ରୟୋଗ କରି ପ୍ରମାଣ କରିଦେଲେ ଯେ ପାରିବାରିକ ଜୀବନରେ କୌଣସି ବିକୃତି ସୃଷ୍ଟି ନ କରି ଯୌନସଂପର୍କକୁ ବିସ୍ତାରିତ କରାଯାଇପାରେ । କିନ୍ତୁ ଯେକୌଣସି ବ୍ୟକ୍ତି ଏପରି କରିବା ଲାଗି ସକ୍ଷମ ନୁହଁନ୍ତି । ଅତ୍ୟନ୍ତ ଉଚ୍ଚ ନା ନୀଚ ସ୍ତରର ବ୍ୟକ୍ତି ଏହି ପ୍ରୟୋଗରେ ସଫଳ ହୋଇପାରନ୍ତି । ତେଣୁ ସାଧାରଣ ସମାଜ ବ୍ୟବସ୍ଥାରେ ଏକ ପତି ବା ଏକ ପତ୍ନୀ ପ୍ରଥାର ପ୍ରଚଳନ ରହିଛି । ଏ ପ୍ରଥା ଉଚିତ ଏବଂ ଆବଶ୍ୟକ ।

ପ୍ରାଚୀନ କାଳରେ ନିୟୋଗ ପ୍ରଥାର ପ୍ରଚଳନ ଥିଲା । ସୁଯୋଗ୍ୟ ସନ୍ତାନ ଉତ୍ପନ୍ନ କରିବା କ୍ଷମତାର ଅଭାବ ଥିଲେ, ଅନ୍ୟ ଉପଯୁକ୍ତ ବ୍ୟକ୍ତି ସହିତ ଯୌନସଂପର୍କ କରିବା ସକାଶେ ପତି ନିଜ ପତ୍ନୀକୁ ଅନୁମତି ଦେଉଥିଲେ । ଏହି ସଂପର୍କ ଫଳରେ ଯେଉଁ ସନ୍ତାନ ଭୂମିଷ୍ଠ ହେଉଥିଲେ, ସେମାନଙ୍କୁ ସମ୍ମାନିତ ନାଗରିକ ରୂପେ ପରିଗଣିତ କରାଯାଉଥିଲା । ବିଚିତ୍ରବୀର୍ଯ୍ୟ ବ୍ୟାସମୁନିଙ୍କ ସହିତ ନିଜ ପତ୍ନୀମାନଙ୍କର ନିୟୋଗ ବ୍ୟବସ୍ଥା କରିଥିଲେ । ଏହା ଫଳରେ ଉତ୍ପନ୍ନ

ହୋଇଥିବା ସନ୍ତାନଗଣ ପାଣ୍ଡୁ, ଧୃତରାଷ୍ଟ୍ର ଓ ବିଦୁର ବୈଧ ସନ୍ତାନର ସମ୍ମାନରୁ ବଞ୍ଚିତ ହୋଇ ନ ଥିଲେ । ଆଜିକାଲି ଲୋକଙ୍କର ମାନସିକ ଅବସ୍ଥା ଅଲଗା । ତେଣୁ ଏ ବ୍ୟବସ୍ଥାରେ କଟାକଣା କରିବା ଦରକାର ମନେ ହେଲା । ସେକାଳର ବ୍ୟକ୍ତିମାନେ ଅଧିକ ଉଦାର ଓ ଦାୟିତ୍ୱସମ୍ପନ୍ନ ଥିଲେ । ନିୟୋଗ ବ୍ୟବସ୍ଥାର ପ୍ରଚଳନ ଥାଇ ସୁଦ୍ଧା କେହି ନିଜ ପାରିବାରିକ ଦାୟିତ୍ୱକୁ ଅବହେଳା କରୁନଥିଲେ । ସେ କାଳର କଥା ଅଲଗା । କିନ୍ତୁ ବର୍ତ୍ତମାନକାଳର ସଂକୀର୍ଣ୍ଣମନା ଲୋକମାନେ ଯତ୍‌ସାମାନ୍ୟ ଆକର୍ଷଣ ଯୋଗୁଁ ନିଜ ଗୃହବ୍ୟବସ୍ଥାକୁ କଳୁଷିତ କରିଦେଉଛନ୍ତି । ତେଣୁ ଏକ ପତି ବା ଏକ ପତ୍ନୀର ମର୍ଯ୍ୟାଦା ହିଁ ଉଚିତ ।

ପୁରୁଷ ଓ ନାରୀ ସଂପର୍କରେ ଅଭିବୃଦ୍ଧି ହେତୁ ଯେଉଁ ବିପଦ ରହିଛି, ତାହାକୁ ବୁଝିବା ପାଇଁ ଆମେ ଗଭୀର ଭାବରେ ଚିନ୍ତା କରିବା । ସମାଜରେ ପାରିବାରିକ ବିଗ୍ରହ କାରଣରୁ ଉତ୍ପନ୍ନ ଅବ୍ୟବସ୍ଥାର ପ୍ରଶ୍ନ ଉପରେ ବିଚାର କରାଯାଇପାରେ । ଉଚ୍ଚସ୍ତରୀୟ ସଂପର୍କ ଥିଲେ ସେପରି ସମ୍ବନ୍ଧକୁ ସାମାନ୍ୟ ଉପେକ୍ଷା କରାଯାଇପାରେ । କିନ୍ତୁ ଏ ପରିପ୍ରେକ୍ଷୀରେ ଅଧିକ କଟକଣା କରିବାର ମହତ୍ତ୍ୱପୂର୍ଣ୍ଣ କାରଣ ହେଉଛି- ଯୌନ ସଂପର୍କ ଦ୍ୱାରା ପୁରୁଷ ଓ ନାରୀର ଅତି ମହତ୍ତ୍ୱପୂର୍ଣ୍ଣ ବିଦ୍ୟୁତ୍ ଶକ୍ତି ଜଣକଠାରୁ ଅନ୍ୟଜଣକଙ୍କଠାରେ ଅତି ତୀବ୍ର ଗତିରେ ପ୍ରବାହିତ ହୋଇଥାଏ । ଏହି ପ୍ରବାହ ଉପଯୁକ୍ତ ନ ହେଲେ ଆନ୍ତରିକ କ୍ଷମତା ଭୟଙ୍କର ଭାବରେ ହ୍ରାସ ପାଇଥାଏ ଓ ତାହାର ବିଦ୍ରୂପ ହୁଏ । ଶକ୍ତିର ନିୟମ ହେଉଛି, ତାହା ଅଧିକରୁ ଅଳ୍ପଆଡ଼କୁ ପ୍ରବାହିତ ହୁଏ । ଦୁଇଟି ପୁଷ୍କରିଣୀକୁ ଯଦି ଗୋଟିଏ ନାଳ ଦ୍ୱାରା ସଂଯୁକ୍ତ କରାଯାଏ, ତେବେ ଉଚ୍ଚ ଜଳସ୍ତର ଥିବା ପୁଷ୍କରିଣୀର ଜଳ ନିମ୍ନ ଜଳସ୍ତର ଥିବା ପୁଷ୍କରିଣୀକୁ ପ୍ରବାହିତ ହେବ ଏବଂ ଉଭୟ କ୍ଷେତ୍ରରେ ଜଳସ୍ତର ସମାନ ନହେବା ପର୍ଯ୍ୟନ୍ତ ସେ ପ୍ରବାହ ଚାଲୁ ରହିବ । ଜଣେ ରୋଗୀ ଏବଂ ଅନ୍ୟ ଜଣେ ସୁସ୍ଥ ବ୍ୟକ୍ତିଙ୍କ ମଧ୍ୟରେ ଯଦି ଯୌନ ସଂପର୍କ ହୁଏ, ତେବେ ପ୍ରତ୍ୟକ୍ଷ ରୂପେ ରୋଗୀ ଉପକୃତ ହେବ ଏବଂ ସୁସ୍ଥବ୍ୟକ୍ତିର କ୍ଷତି ହେବ । ଜଣକର ସାମର୍ଥ୍ୟ ଅନ୍ୟ ଜଣଙ୍କଠାରେ ପ୍ରବାହିତ ହେବ । ନର ହେଉ ବା ନାରୀ ହେଉ, ଯିଏ ଦୁର୍ବଳ ଥିବ, ତାହାର ଉପକାର ହେବ । ସୁସ୍ଥ ବ୍ୟକ୍ତି କ୍ଷତିର ସମ୍ମୁଖୀନ

ହେବ । ଶାରୀରିକ ଅବସ୍ଥା କ୍ଷେତ୍ରରେ ଏହି ତଥ୍ୟ ଯେତିକି ପ୍ରଯୁଜ୍ୟ, ମାନସିକ ଅବସ୍ଥା କ୍ଷେତ୍ରରେ ତାହା ହଜାର ଗୁଣ ଅଧିକ ପ୍ରଯୁଜ୍ୟ । ନୀଚ ସ୍ତରର ଦୁଷ୍ଟ, ଦୁରାଚାରୀ, ବ୍ୟସନୀ ଓ ଅନାଚାରୀ ବ୍ୟକ୍ତିଙ୍କ ସହିତ ଯୌନ ସଂପର୍କ ସ୍ଥାପନ କରିଥିବା ଅନ୍ୟ ପକ୍ଷ ନିଜର ଆତ୍ମିକ ବିଶେଷତ୍ୱ କ୍ରମଶଃ ହରାଇ ବସନ୍ତି । ଠିକ୍ ସେହିପରି ମନ୍ଦବୁଦ୍ଧି ଏବଂ ପ୍ରତିଭାସମ୍ପନ୍ନଙ୍କ ମଧ୍ୟରେ ଏପରି ପ୍ରତ୍ୟାବର୍ତ୍ତନ ସୁନିଶ୍ଚିତ ରୂପେ ସମର୍ଥ ପକ୍ଷ ପାଇଁ କ୍ଷତିକାରକ ହେବ ।

ଉଚ୍ଚସ୍ତରୀୟ ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କଠାରେ ସ୍ୱଭାବତଃ ଯଥେଷ୍ଟ ମହତ୍ତ୍ୱପୂର୍ଣ୍ଣ ଚେତନ ତତ୍ତ୍ୱ ଥାଏ । ସେହି ଆଧାର ଉପରେ ସେମାନଙ୍କୁ ଆଶ୍ଚର୍ଯ୍ୟଜନକ ସଫଳତା ମିଳିଥାଏ । ସେହି ଶକ୍ତି ସ୍ରୋତକୁ ଯଦି ସେମାନେ କାମକ୍ରୀଡ଼ାରେ ଅପବ୍ୟୟ କରନ୍ତି, ତେବେ ସେମାନଙ୍କ କୋଷ ଧୀରେଧୀରେ ଶୂନ୍ୟ ହୋଇଯିବ । ତେଣୁ ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କୁ, ଉଚ୍ଚସ୍ତରୀୟ ବୌଦ୍ଧିକ ତଥା ଆତ୍ମିକ ଗୁଣସମ୍ପନ୍ନ ବ୍ୟକ୍ତିଙ୍କୁ ଏପରି ବିନିଯୋଗ ପାଇଁ ବାରଣ କରାଯାଇଛି । ଏ ଶ୍ରେଣୀର ଲୋକମାନଙ୍କ ସକାଶେ ବ୍ରହ୍ମଚର୍ଯ୍ୟ ଅପରିହାର୍ଯ୍ୟ । ମନୋବଳ ଓ ଆତ୍ମବଳସମ୍ପନ୍ନ ବ୍ୟକ୍ତି ବ୍ୟଭିଚାର କଲେ ସେମାନଙ୍କର ଯେତେ କ୍ଷତି ହୋଇଥାଏ, ନୀଚ ଶାରୀରିକ ଓ ମାନସିକ ସ୍ଥିତିର ଲୋକ ବ୍ୟଭିଚାର କଲେ ସେତିକି କ୍ଷତି ହୋଇ ନ ଥାଏ । ଶାରୀରିକ ବଳ ତୁଳନାରେ ମନୋବଳର ମୂଲ୍ୟ ବେଶୀ । ପୁଷ୍ଟ ଶରୀର ଓ ଦୁର୍ବଳ ଶରୀରଯୁକ୍ତ ବ୍ୟକ୍ତିଙ୍କ ମଧ୍ୟରେ ଯୌନ ସଂପର୍କ ହେଲେ ସୁସ୍ଥ ପକ୍ଷର ସାମାନ୍ୟ ଶାରୀରିକ କ୍ଷତି ହୋଇଥାଏ । କିନ୍ତୁ ମନୋବଳ, ବୁଦ୍ଧିବଳ ଓ ପ୍ରତ୍ୟକ୍ଷ ପ୍ରାଣ ସାମାନ୍ୟ ସୁଯୋଗ ମିଳିଲେ ତାହା ପ୍ରଚଣ୍ଡ ପ୍ରବାହ ପରି ବିଦ୍ୟୁତ୍ ଗତିରେ ଧାଇଁ ଥାଏ ଏବଂ ନିମ୍ନସ୍ତରର ପକ୍ଷ ଦିଗରେ ପ୍ରବାହିତ ହୋଇଥାଏ । ଦୁର୍ବଳ ମନୋବଳ ଥିବା ପକ୍ଷ ନିଜକୁ ସାମାନ୍ୟ ଉନ୍ନତ କରିବା କଥା ଠିକ୍ । କିନ୍ତୁ ପ୍ରାଣଶକ୍ତିସମ୍ପନ୍ନ ପକ୍ଷ ନିଜର ପ୍ରତିଭା ହରାଇ ସେହି ପ୍ରୟୋଜନକୁ ପୂରଣ କରିବାରେ ଅସମର୍ଥ ହୋଇଯାଏ । ଅଥଚ ସେହି ପ୍ରତିଭା ଅନେକ ଦୃଷ୍ଟିରେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

ବ୍ୟକ୍ତି ବିନିଯୋଗ ପ୍ରତି ଦୃଷ୍ଟି ଦେଇ ଅତି ସତର୍କ ଭାବରେ ବିବାହର ବ୍ୟବସ୍ଥା କରାଯିବା ଦରକାର । ଯୋଡ଼ି ଉପଯୁକ୍ତ ହେଲେ ବିବାହର ସାର୍ଥକତା

ରହେ । ଅନ୍ୟଥା ଲାଭ ବଦଳରେ ଅଧିକ କ୍ଷତିର ସମ୍ଭାବନା ରହିଛି । ବିବାହର ପରବର୍ତ୍ତୀ ଅବସ୍ଥାରେ ପ୍ରାଣ ପ୍ରତ୍ୟାବର୍ତ୍ତନ ଯେପରି ମହତ୍ତ୍ୱପୂର୍ଣ୍ଣ, ରୋଷେଇ କରିବା କିମ୍ବା ସନ୍ତାନ ପ୍ରସବ କରିବା ସେତିକି ମହତ୍ତ୍ୱପୂର୍ଣ୍ଣ ନୁହେଁ । ଯାହାର ବ୍ୟକ୍ତିତ୍ୱ ଯେତିକି ନୀଚ ସ୍ତରର ହେବ, ଗୁଣ, କର୍ମ, ସ୍ୱଭାବ ଦୃଷ୍ଟିରୁ ଯାହାର ସ୍ତର ଯେତେ ନିମ୍ନ ହେବ, ତାହାର ଆନ୍ତରିକ କ୍ଷମତା ତଦନୁପାତରେ କ୍ଷୀଣ, ଦୁର୍ବଳ ହେବ । କେତେ ଲୋକ ଶରୀର ଦୃଷ୍ଟିରୁ ସୁନ୍ଦର ଓ ପରିପୁଷ୍ଟ ଦେଖାଯାଉଥିଲେ ସୁଦ୍ଧା ଆନ୍ତରିକ ଦୁର୍ବଳତା କାରଣରୁ ଅତ୍ୟନ୍ତ ହୀନଦୀନ ହୋଇଥାନ୍ତି । ବିପରୀତ ପକ୍ଷରେ କ୍ଷୀଣ ଦେଖାଯାଉଥିବା ଲୋକଙ୍କର ପ୍ରାଣବଳ ଆନ୍ତରିକ ଉତ୍କୃଷ୍ଟ ଅବସ୍ଥା କାରଣରୁ ଅତି ପ୍ରବଳ ହୋଇଥାଏ । ଯୌନ ସମ୍ପର୍କ ମାଧ୍ୟମରେ ଶରୀରର ନୁହେଁ, ବରଂ ପ୍ରାଣର ପ୍ରତ୍ୟାବର୍ତ୍ତନ ଘଟେ । ଶରୀରର ସୂକ୍ଷ୍ମସ୍ୱରୂପ ହେଉଛି ପ୍ରାଣ, ଶକ୍ତିର ବା କଳେବର ନୁହେଁ । ଉତ୍କୃଷ୍ଟ ବ୍ୟକ୍ତିତ୍ୱ ଏବଂ ଶ୍ରେଷ୍ଠ ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କଠାରେ ପ୍ରାଣର ପୁଷ୍ଟି ତଥା ପରିପକ୍ୱ ଅବସ୍ଥା ସମ୍ଭବ ହୋଇଥାଏ । ଏପରି ବ୍ୟକ୍ତିମାନେ ନିଜର ସେହି ବିଭୂତିକୁ କ୍ରୀଡ଼ା କଲ୍ଲୋଳରେ ଅପବ୍ୟୟ କରି ନିଃସ୍ୱ ନ ହୁଅନ୍ତୁ, ବିଶ୍ୱର ମହତ୍ତର ସେବା କରିବା ପୁଣ୍ୟରୁ ବଞ୍ଚି ନ ହୁଅନ୍ତୁ । ତେଣୁ ଅଧିକ ସତର୍କ ଓ କଠୋର ହୋଇ ବ୍ରହ୍ମଚର୍ଯ୍ୟ ପାଳନ କରିବା ଉଦ୍ଦେଶ୍ୟରେ ସେମାନଙ୍କୁ ପ୍ରତିବନ୍ଧିତ କରାଯାଇଛି ।

କାମବିକାର ଝଡ଼ ତୋଫାନ ପରି ଆସେ । ପାତ୍ର ଅପାତ୍ରର ପାର୍ଥକ୍ୟ ନ ଦେଖି ବାଦଲ ପରି ତାହା ସର୍ବତ୍ର ବୃଷ୍ଟି କରିଥାଏ । ଏ ସଂପର୍କ ବୈଧ କିମ୍ବା ଉପଯୁକ୍ତ ନ ହେଲେ, ସେଥିରୁ ବହୁବିଧ ବିକୃତି ଉତ୍ପନ୍ନ ହୋଇଥାଏ । ବିବାହ ହେଉ କିମ୍ବା ବ୍ୟଭିଚାର ହେଉ, ପ୍ରାଣ ଶକ୍ତିର ବିନିଯୋଗ ସମାନ ରୂପେ ନିଜର ବୈଜ୍ଞାନିକ ପ୍ରଭାବ ଉତ୍ପନ୍ନ କରିବ । ନୀଚ ସ୍ତରର ବ୍ୟକ୍ତିଙ୍କ ସହିତ ସଂପର୍କ ରକ୍ଷା କରି ପତ୍ନୀକୁ କିମ୍ବା ପ୍ରେୟସୀକୁ କୌଣସି ଉପକାର ନ ମିଳିପାରେ । ପତି କିମ୍ବା ପ୍ରେମିକକୁ କୌଣସି ଲାଭ ମିଳି ନ ପାରେ । ଯୌନ ସଂପର୍କ ଏକପ୍ରକାର ନିଜର ଶାରୀରିକ, ମାନସିକ ଓ ଆତ୍ମିକ ଧନର ସମର୍ପଣ । ବିବେକଶୂନ୍ୟ ଭାବରେ, କାହାରି ଆନ୍ତରିକ ଅବସ୍ଥାକୁ ନ ପରଖି, ଶାରୀରିକ ଆକର୍ଷଣ ବା ଇନ୍ଦ୍ରିୟ ପ୍ରେରଣାରେ ପ୍ରେରିତ ହୋଇ ଯେକୌଣସି ବ୍ୟକ୍ତି ସହିତ ଯୌନ ସଂପର୍କ କଲେ

ତାହା ଫଳରେ ସମର୍ଥ ପକ୍ଷ ବହୁ ପ୍ରକାର ଅତ୍ୟନ୍ତ ଗଭୀର କ୍ଷତିର ସମ୍ମୁଖୀନ ହେବ । ସାମାନ୍ୟ କ୍ରୀଡ଼ାର ସୁଖ ଏହା ଅପେକ୍ଷା ଅତି ମହଙ୍ଗା ହୋଇଯିବ ।

ପୁରୁଷ ଓ ନାରୀର ସାମାଜିକ ସଂପର୍କ ଯଦି ବ୍ୟଭିଚାର ଦିଗରେ ଗତି କରେ, ତେବେ ନିଃସନ୍ଦେହ ତାହା ଅତୀବ କ୍ଷତିକାରକ । ଏହା ଫଳରେ ମନୋବଳ ଉନ୍ନତ ହୋଇ ନ ଥାଏ । ଆମର ବହୁତ କ୍ଷତି ହେବ । ପ୍ରତିଭା କ୍ରମଶଃ କୁଣ୍ଠିତ ହୋଇପଡ଼ିବ । ଉଚ୍ଚସ୍ତରର ବ୍ୟକ୍ତିତ୍ୱ ଦୁର୍ବଳ ହୋଇଯିବାରୁ ସମାଜର ବହୁତ କ୍ଷତି ଘଟିବ । ଶାରୀରିକ ସଂପର୍କର ମର୍ଯ୍ୟାଦାର ବ୍ୟତିକ୍ରମ ମଧ୍ୟ ଅଳ୍ପ କ୍ଷତିକାରକ ନୁହେଁ । ସାଧାରଣ ଲୋକମାନେ ବହୁଦିନ ବ୍ୟବଧାନରେ କେବେକେବେ କାମ ସେବନ ବିଷୟ ଚିନ୍ତା କରିବା ଉଚିତ । ଭବିଷ୍ୟତରେ ସେମାନେ ଏପରି ଅପକର୍ମରେ ବ୍ୟସ୍ତ ରହି ନିଜର ଓଜସ୍‌କୁ ଆବର୍ଜନାମୟ ନର୍ଦ୍ଦମାରେ ପ୍ରବାହିତ କଲେ, ସେମାନେ କେବଳ ଶାରୀରିକ ରୋଗ ଏବଂ ଦୁର୍ବଳତାର ଶିକାର ହେବେ ନାହିଁ, ବରଂ ମନୋବଳ ଓ ଆତ୍ମଶକ୍ତି ରୂପକ ଧନ ନାଶ କରିବେ । କାମ ସେବନରେ ଯେଉଁମାନଙ୍କର ପ୍ରବଳ ପ୍ରବୃତ୍ତି ରହିଛି, ସେମାନେ ନିଜର ସର୍ବନାଶ କରିବା ସଙ୍ଗେ ସଙ୍ଗେ ସାଥୀର ମଧ୍ୟ ସର୍ବନାଶ କରିଥାନ୍ତି । ଆମ ସମାଜରେ ନାରୀର ଶାରୀରିକ ତଥା ମାନସିକ ଦୁର୍ଗତିର ପୃଷ୍ଠଭୂମିରେ ଯେଉଁ କାରଣ ରହିଛି, ତାହା ହେଉଛି ସେମାନଙ୍କ ପତିଙ୍କର ଅତ୍ୟାଚାରୀ ରୀତିନୀତି । ଏହି କାରଣରୁ ସେମାନେ ବାଧ୍ୟ ହୋଇ ନିଜ ଉତ୍ତମ ସ୍ୱାସ୍ଥ୍ୟର କ୍ଷତି ସହିଥାନ୍ତି । ସଂଯମ ସହିତ ଗୃହସ୍ଥ ଜୀବନ ଯାପନ କରାଗଲେ କୌଣସି ନାରୀ ବନ୍ଧ୍ୟା ହୁଅନ୍ତେ ନାହିଁ କିମ୍ବା ପ୍ରଦର ପରି ରୋଗର ଶିକାର ହୁଅନ୍ତେ ନାହିଁ । ଯେତିକି ସନ୍ତାନଙ୍କୁ ଭଲରୂପେ ପ୍ରତିପାଳନ କରିବା ସମ୍ଭବ ନୁହେଁ, ସେତିକି ସନ୍ତାନ ପ୍ରସବ କରି ଗୃହସ୍ଥ ଜୀବନର ଉଦ୍ଦେଶ୍ୟ ଓ ଆନନ୍ଦ ନଷ୍ଟ କରିବା ଯୌନ ସଂପର୍କର ମର୍ଯ୍ୟାଦା ଉଲ୍ଲଙ୍ଘନ କରିବା ସହିତ ସମାନ । ଏପରି ଅବିବେକୀ ସାଥୀ ପାଇଁ କେଉଁ ଗୃହସ୍ଥଙ୍କୁ ବିବାହର ଆନନ୍ଦ ମିଳିବ ? ବିବାହ ପରେ ଯୌନ ସଂପର୍କ ସକାଶେ ଉନ୍ମୁକ୍ତ ସ୍ୱାଧୀନତା ମିଳେ । ବିବାହ କରିବା ପୂର୍ବରୁ ସାଥୀର ପ୍ରାଣତତ୍ତ୍ୱ ବିଷୟରେ ହଜାର ଥର ଚିନ୍ତା କରିବା ଆବଶ୍ୟକ । ସାଥୀର ବିଚାର, ଭାବନା, ଗୁଣ, କର୍ମ, ସ୍ୱଭାବ, ଚରିତ୍ର,

ମନୋବଳ, ଆତ୍ମବଳ ପରି ଉଚ୍ଚ ତତ୍ତ୍ୱର ସ୍ଥିତି ବିଷୟରେ ଅବଗତ ହେବା ଆବଶ୍ୟକ । ଏପରି ଚିନ୍ତା ନକରି କୌଣସି ମନୁଷ୍ୟ ଶରୀର ସହିତ ବିବାହ କରାଗଲେ, ଶରୀରକୁ କ୍ଷୀଣ କରିବା ବ୍ୟତୀତ ଅନ୍ୟ କୌଣସି ଉଦ୍ଦେଶ୍ୟ ପୂରଣ ହୋଇ ନ ଥାଏ ।

ଜନନେନ୍ଦ୍ରିୟର ସଂପର୍କ କେବଳ କାମ ଉଲ୍ଲାସ ନୁହେଁ । ଉଚ୍ଚ ଭାବନାସମ୍ପନ୍ନ ବ୍ୟକ୍ତିତ୍ୱର ପରସ୍ପର ମଧ୍ୟରେ ଆଦାନ ପ୍ରଦାନ ହିଁ ସେ ଆନନ୍ଦ ସୃଷ୍ଟି କରିପାରେ । ଏହାକୁ ଭୌତିକ ଜଗତର ସର୍ବଶ୍ରେଷ୍ଠ ସୁଖ ମନେ କରାଯାଇଥାଏ ଏବଂ ବ୍ରହ୍ମାନନ୍ଦ ସହିତ ଏହାର ତୁଳନା କରାଯାଇଥାଏ । ପ୍ରକୃତି ଏବଂ ପୁରୁଷର ସଂଯୋଗ ହିଁ ଏ ସୃଷ୍ଟିରେ ଆନନ୍ଦ ଓ ଉଲ୍ଲାସର ତରଙ୍ଗ ଜାତ କରିଥାଏ । ଯେଉଁ ଏକାନ୍ତ ମିଳନ ଶକ୍ତିକୁ କୌଣସି ରୂପେ ନଷ୍ଟ ନ କରି ବରଂ ବହୁଗୁଣରେ ବୃଦ୍ଧି କରିଥାଏ, କେବଳ ଉଚ୍ଚସ୍ତରୀୟ ଭାବନାସମ୍ପନ୍ନ ନର ନାରୀ ହିଁ ସେ ମିଳନର ଆନନ୍ଦ ଉପଭୋଗ କରିପାରନ୍ତି । ସାଧାରଣତଃ କାମ ସେବନକୁ କ୍ଷତିକାରକ ମନେ କରାଯାଏ । ଏହି ବ୍ୟତିକ୍ରମ ବ୍ୟତୀତ ତାହା ଲାଭଦାୟକ, ଶକ୍ତିବର୍ଦ୍ଧକ ଓ ଉତ୍କର୍ଷରେ ସହାୟକ ରୂପେ ପ୍ରମାଣିତ ହୋଇପାରେ । କିନ୍ତୁ ଏପରି କେଉଁଠି ହୁଏ ? ଏପରି ଯୋଡ଼ି ମିଳନ୍ତି କେଉଁଠି ? ଏପରି ଅବସ୍ଥା ନ ମିଳିଲେ କେବଳ ଇନ୍ଦ୍ରିୟ ସୁଖ ଉଦ୍ଦେଶ୍ୟରେ କାମ ସେବନ ଏକ କ୍ଷଣିକ ଆବେଶ ଏବଂ କ୍ଷତିକାରକ କାର୍ଯ୍ୟ ବ୍ୟତୀତ ଅନ୍ୟ କିଛି ହୋଇ ନପାରେ । ତେଣୁ ଯୌନ ସଂପର୍କ କ୍ଷେତ୍ରରେ ଅତ୍ୟନ୍ତ ସାବଧାନତା ରକ୍ଷା କରିବା ଏବଂ ଯଥାସମ୍ଭବ ବ୍ରହ୍ମଚର୍ଯ୍ୟର ମର୍ଯ୍ୟାଦା ପାଳନ କରିବା ନିର୍ଦ୍ଦିଷ୍ଟ କରାଯାଇଛି । ଏହା ସର୍ବୋପଯୋଗୀ ଅଟେ ।

## କାମକୁ କେବଳ ମରଣ ନୁହେଁ, ଅମୃତ କରିବା

ଶରୀରଶାସ୍ତ୍ରୀ ଓ ମନୋବୈଜ୍ଞାନିକମାନେ କହନ୍ତି, "ପୁରୁଷ ପୁରୁଷ ଭିତରେ ସାନ୍ନିଧ, ନାରୀ ନାରୀ ଭିତରେ ସାନ୍ନିଧ ମାନବୀୟ ପ୍ରସୁପ୍ତ ଶକ୍ତିର ବିକାଶ ଦିଗରେ ଭିନ୍ନ ବର୍ଗର ସାନ୍ନିଧ ସମାନ ଉପଯୋଗୀ ନୁହେଁ । ବିବାହ ପରେ ସହଚରତ୍ୱର ଭାବନା ପ୍ରଧାନ ରୂପେ ଉପଯୋଗୀ ଅଟେ । ବାସ୍ତବ ସଖା, ସହଚର ଦୃଷ୍ଟିରେ ପରସ୍ପର ସହିତ ହସି, ଖେଳି ଜୀବନ କଟାଉଥିବା ପତିପତ୍ନୀ ଯଦି ଆଜୀବନ

କାମ ସେବନ ନ କରନ୍ତି, ତଥାପି ପରସ୍ପରର ମାନସିକ ଓ ଆତ୍ମିକ ଅଭାବକୁ ସେମାନେ ବହୁଳାଂଶରେ ପୂରଣ କରିପାରନ୍ତି । ମନୁଷ୍ୟ ଠାରେ କେଜାଣି କି ରହସ୍ୟମୟ ଅଭାବ ରହିଛି ଯେ ସେ ଭିନ୍ନ ବର୍ଗର ସହଚର ଦ୍ୱାରା ଅକାରଣ ଯଥେଷ୍ଟ ଶାନ୍ତି ଓ ତୃପ୍ତି ଅନୁଭବ କରେ । ଅବିବାହିତ ଜୀବନରେ ସବୁ ପ୍ରକାର ସୁବିଧା ଥାଇ ସୁଦ୍ଧା ଏ ପ୍ରକାର ଉଦ୍‌ବିଗ୍ନ ଭାବ, ଅତୃପ୍ତି ଓ ଅଶାନ୍ତି ରହିଥାଏ । ବିବାହ ପରେ ମାନସିକ ନିଶ୍ଚିନ୍ତ ଅବସ୍ଥା ଅନୁଭୂତ ହୁଏ । ସାଥୀଠାରୁ ପ୍ରଗାଢ଼ ମୈତ୍ରୀର ବିଶ୍ୱାସ ରଖି ବ୍ୟକ୍ତି ନିଜର ସାମର୍ଥ୍ୟକୁ ଦୁଇଗୁଣ ନୁହେଁ, ଦଶଗୁଣ ବଢ଼ିଯିବାର ଅନୁଭବ କରେ । ଏକାକୀ ଜୀବନରେ ଶୂନ୍ୟତା ରହେ । ପରେ ଏକାକୀ ନୁହେଁ, ଅନ୍ୟ ଏକ ସାଥୀକୁ ନେଇ ଚାଲିଲେ ମନରେ ବିଶ୍ୱାସ ଆସେ ଓ ସେ ଶୂନ୍ୟତା ପୂରଣ ହୋଇଯାଏ । ସେ ସାଥୀ ଦରକାରବେଳେ ସାହାଯ୍ୟ କରିବ ଓ ପ୍ରଗତିର ପ୍ରତ୍ୟେକ ସ୍ୱପ୍ନକୁ ରଙ୍ଗିନ କରିବ– ଏପରି ବିଶ୍ୱାସ ମନରେ ଜାତ ହେବା ସଙ୍ଗେ ସଙ୍ଗେ ମନୋବଳ ଚାରିଗୁଣ ବଢ଼ିଯାଏ । ଉତ୍ସାହପୂର୍ଣ୍ଣ କର୍ମଠତା ଓ ଆଶାପୂର୍ଣ୍ଣ ଆଲୋକ ଯୋଗୁଁ ଜୀବନ କ୍ରମରେ ଏକ ଅଭିନବ ଉଲ୍ଲାସ ଦୃଷ୍ଟିଗୋଚର ହୁଏ । ବିବାହର ମୂଳଭୂତ ଲାଭ ହେଉଛି– ଭିନ୍ନ ବର୍ଗର ସାନ୍ନିଧ୍ୟ ଯୋଗୁଁ ହେଉଥିବା ଉଭୟ ପକ୍ଷୀୟ ସୂକ୍ଷ୍ମ ଶକ୍ତି ପ୍ରକ୍ରିୟାର ଅତି ମହତ୍ତ୍ୱପୂର୍ଣ୍ଣ ପ୍ରତ୍ୟାବର୍ତ୍ତନ । ଏହା ବ୍ୟତୀତ ଅନ୍ୟ ଲାଭ ମଧ୍ୟ ରହିଛି । ଅନ୍ତରଙ୍ଗର ଏକାକୀ ଭାବ ଦୂର କରିବା ଓ ଦ୍ୱିଗୁଣ ସାମର୍ଥ୍ୟ ଅନୁଭବ କରିବା ମଧ୍ୟ ଉଜ୍ଜ୍ୱଳ ଭବିଷ୍ୟତର ସମ୍ଭାବନା ଦୃଷ୍ଟିରୁ ଅତ୍ୟନ୍ତ ଉପଯୋଗୀ ହୋଇଥାଏ ।

ବିବାହିତ ଜୀବନରେ ଆବଶ୍ୟକତା ଅନୁସାରେ, ମର୍ଯ୍ୟାଦାର ପରିସର ଭିତରେ ଥାଇ ଉପଯୁକ୍ତ ରୂପେ କାମ ସେବନ କରାଗଲେ ତାହା ଅନର୍ଥ ନୁହେଁ । କିନ୍ତୁ ତାହାକୁ ଆବଶ୍ୟକୀୟ ବା ଅନିବାର୍ଯ୍ୟ ମନେ କରାଯାଇ ନ ପାରେ । ଦୁଇ ପୁରୁଷ ଓ ଦୁଇ ନାରୀ ମଧ୍ୟରେ ଘନିଷ୍ଠ ମିତ୍ରତା ଥିଲେ ଯେପରି ମାନସିକ ଅବସ୍ଥା ହୋଇଥାଏ, ମୋଟାମୋଟି ଭାବରେ ପତିପତ୍ନୀଙ୍କର ମାନସିକ ଅବସ୍ଥା ସେହିପରି ହେବା ଦରକାର । ସଖା, ସାଥୀ, ମିତ୍ର, ସ୍ନେହୀର ସଂପର୍କ ଯଥେଷ୍ଟ । କାମୁକ ଓ କାମିନୀକୁ ଦୃଷ୍ଟିରେ ରଖି କରାଯାଇଥିବା ବିବାହ ଘୃଣ୍ୟ । ରୂପ, ରଙ୍ଗ, ଶୋଭା,

ସୌନ୍ଦର୍ଯ୍ୟର ଆଧାରରୁ ଉତ୍ପନ୍ନ ହୋଇଥିବା ଆକର୍ଷଣ ଏକ ଆବେଶ ମାତ୍ର । ଏହି ଆଧାର ଉପରେ ଯେଉଁ ଯୋଡ଼ି ହୁଅନ୍ତି, ସେମାନେ ସଫଳ ହୋଇ ନ ଥାଁନ୍ତି । ସାଧାରଣ ଏକ ରୋଗ କ୍ଷଣକ ଭିତରେ ରୂପ ଯୌବନର ଛଟାକୁ ନଷ୍ଟ କରି ଦେଇପାରେ । ଏହାପରେ ଅନ୍ୟ କୌଣସି ଅଧିକ ଆକର୍ଷଣ ନଜରକୁ ଆସିଗଲେ, ମନ ସେ ଆଡ଼କୁ ଢଳିଯାଏ । ରୂପବାନଠାରେ ଦୋଷ ଦୁର୍ଗୁଣ ଭରି ପଡ଼ିଥିଲେ ବେଶୀଦିନ ଘର କରିହୁଏ ନାହିଁ । ଆଜିର ବିବାହ ପ୍ରଥାରେ ଶାରୀରିକ ଆକର୍ଷଣ ଖୋଜିବା ଏକ ପ୍ରଧାନ ଅଙ୍ଗ ରୂପେ ଦେଖାଦେଇଛି । ରୂପବାନ ପୁଅ ଝିଅଙ୍କୁ ଲୋକେ ଖୋଜିଥାନ୍ତି । କୁରୂପଯୁକ୍ତ ପୁଅ ଝିଅମାନଙ୍କର ବଜାର ଭାଉ ଦିନକୁ ଦିନ ତଳକୁ ଯାଉଛି । ଏ ପ୍ରବୃତ୍ତି ଅତ୍ୟନ୍ତ ବିଘାତକ । ଚମଡ଼ାର ଛଟା ଯଦି ଭଲ ଜୀବନ ସାଥୀର କଷଟି ପଥର ହୋଇଯିବ, ତାହାହେଲେ ଆନ୍ତରିକ ସ୍ତରର ଉତ୍କୃଷ୍ଟ ଭାବର ମୂଲ୍ୟ ରହିବ କେଉଁଠି ? ଭାବନା, ସଦ୍‌ଗୁଣ, ସ୍ନେହ ସୌଜନ୍ୟର ମୂଲ୍ୟାଙ୍କନ କରିବ କିଏ ?

ଚମଡ଼ାର ରଙ୍ଗ ବା ପାଦର ନଖଠାରୁ ମସ୍ତକ ପର୍ଯ୍ୟନ୍ତ ଅଙ୍ଗର ଗଠନକୁ ଶୋଭା, ସୌନ୍ଦର୍ଯ୍ୟ ଦୃଷ୍ଟିରୁ ପ୍ରଶଂସା କରାଯାଇପାରେ । ନୃତ୍ୟ, ଅଭିନୟରେ ତାହା ମୁଖ୍ୟ ସ୍ଥାନ ଅଧିକାର କରେ । ସେଥିରେ ନୟନାଭିରାମ, ମନମୋହକ ଆକର୍ଷଣ ଦୃଷ୍ଟିଗୋଚର ହୋଇପାରେ । ଈଶ୍ୱରଙ୍କ କୃତିରେ ଏହି ବିଭୂତି ଦେଖି ମନ ଖୁସି ହୋଇପାରେ । କିନ୍ତୁ ଦାମ୍ପତ୍ୟ ଜୀବନରେ ଏହାର କିଛି ବିଶେଷ ଉପଯୋଗିତା ନାହିଁ । ମିଳନ ଚମଡ଼ାର ବା ନାକ, ଆଖିର ହୁଏ ନାହିଁ । ମିଳନ ହୁଏ ଅନ୍ତରାତ୍ମାର । ଉତ୍କୃଷ୍ଟ ବା ନିକୃଷ୍ଟ ସ୍ତରର ଅନ୍ତରାତ୍ମା ଚେହେରା ବା ଅବୟବର ଗଠନ ଉପରେ ନିର୍ଭର କରେ ନାହିଁ । କୌଣସି କଳା ଓ କୁରୂପଯୁକ୍ତ ବ୍ୟକ୍ତି ହୁଏତ ଯୋଗୀ ଅଷ୍ଟବକ୍ର, ନୀତିଜ୍ଞ ଚାଣକ୍ୟ ଅଥବା ପାଞ୍ଚାଳୀ ଦ୍ରୌପଦୀଙ୍କ ସମାନ ଉଚ୍ଚତମ ମାନସିକ ଅବସ୍ଥା ଧାରଣ କରିପାରନ୍ତି । ରୂପବତୀ ନିର୍ତ୍ତକୀ, ଅଭିନେତ୍ରୀ ବା ନଟନାୟକ ଉଚ୍ଚ ଭାବନାଶୀଳ ହୋଇଥାନ୍ତି କି ? କ୍ରୂରକର୍ମ କରିବାର ଦଣ୍ଡ ଭୋଗ କରିବା ପାଇଁ କାରାଗାରକୁ ଅସଂଖ୍ୟ ନରନାରୀ ଆସିଥାନ୍ତି । ସେମାନଙ୍କ କୁକର୍ମର ବିବରଣ ଶୁଣି ରୋମାଞ୍ଚ ଜାତ ହୋଇଥାଏ । ରୂପ ରଙ୍ଗର

ଆବରଣ ତଳେ ସେମାନଙ୍କ ଭିତରେ ପ୍ରେତ ପିଶାଚର ବୀଭତ୍ସ ନୃତ୍ୟ ଦେଖି ହୃଦୟ କମ୍ପିଉଠେ । ବିବାହର ବାସ୍ତବ ଆନନ୍ଦ ଓ ଉପକାର ଆହରଣ କରିବା ପାଇଁ ଯେଉଁମାନେ ଇଚ୍ଛା କରନ୍ତି, ସେମାନେ ରୂପ ରଙ୍ଗର ପ୍ରଶ୍ନକୁ ଆଡ଼େଇଦେବା ଉଚିତ । କେବଳ ସଦ୍‌ଭାବନା, ନିଷ୍ଠା, ସୌଜନ୍ୟ, ବ୍ୟବସ୍ଥା, ଉଦାରତା, ଦୂରଦର୍ଶିତା, ଉତ୍ସାହୀ ଓ ହସମୁଖ ପ୍ରକୃତି ପରି ସଦ୍‌ଗୁଣ ଉପରେ ଦୃଷ୍ଟିଦେବା ଦରକାର । ସଜ୍ଜନମାନଙ୍କ ମଧ୍ୟରେ ଚିରସ୍ଥାୟୀ ମୈତ୍ରୀ ଦେଖାଦେଇଥାଏ । ଦୁର୍ଜନମାନେ କ୍ଷଣକ ମଧ୍ୟରେ ମିତ୍ର ହୋଇଯାନ୍ତି ଓ ଶତ୍ରୁ ହେବାରେ ମଧ୍ୟ ବିଳମ୍ବ ହୁଏ ନାହିଁ । କେବେକେବେ ସେମାନେ ମିଠା କଥା କହନ୍ତି, ତୋଷାମୋଦର ଚରମ ସୀମା ପର୍ଯ୍ୟନ୍ତ ଚାଲିଯାନ୍ତି । କିନ୍ତୁ କ୍ଷଣକ ପରେ ସାମାନ୍ୟ କଥାରେ ରକ୍ତଲୋଲୁପ ହୋଇଉଠନ୍ତି । ଏପରି ଲୋକମାନେ ଅନ୍ୟକୁ ପ୍ରେମର ଜାଲରେ ଛନ୍ଦି ହେବାର ଦେଖାଯାଆନ୍ତି । ତେଣୁ ବିବାହ ପାଇଁ ଚିନ୍ତା କରିବା ପୂର୍ବରୁ ସାଥୀ ନିର୍ବାଚନ କରିବା ସକାଶେ ପରୀକ୍ଷା ଆବଶ୍ୟକ । ରଙ୍ଗ, ରୂପ, ଯାହା ହେଉନା କାହିଁକି, ସାଥୀର ଅନ୍ତରରେ ସ୍ନେହ, ସୌଜନ୍ୟର ସମୁଚିତ ସମାବେଶ ଥିବା ଦରକାର । ଯେଉଁମାନଙ୍କୁ ଏପରି ସାଥୀ ମିଳେ, ସେମାନଙ୍କ ବିବାହ ସାର୍ଥକ ହୋଇଛି ବୋଲି ମନେ କରିବାକୁ ହେବ ।

କାମ ସେବନ ବିଷୟରେ ଉପେକ୍ଷା ବୃତ୍ତି ଧାରଣ କରିବା ଉପଯୁକ୍ତ । ଏହାର ପ୍ରୟୋଗ ସ୍ୱାସ୍ଥ୍ୟ ଉପରେ ପ୍ରଭାବ ପକାଏ । ନିଜର ଶାରୀରିକ ଓ ମାନସିକ ଆବଶ୍ୟକତା ପୂରଣ କରିବା ପରେ ଅତି ଅଳ୍ପସଂଖ୍ୟକ ଲୋକଙ୍କ ନିକଟରେ କ୍ରୀଡ଼ା ଉଲ୍ଲାସରେ ନିୟୋଜିତ କରିବା ସକାଶେ ଓଜସ୍ ଶକ୍ତି ବଳକା ରହିଥାଏ । ସାଧାରଣତଃ ବର୍ତ୍ତମାନ ପରିସ୍ଥିତିରେ ଲୋକମାନେ ଯେଉଁ ପରିମାଣରେ ଶକ୍ତି ଉପାର୍ଜନ କରିଥାନ୍ତି, ସେଥିରେ କୌଣସି ପ୍ରକାରେ କାମ ଚଳିଯାଇ ପାରେ । ଏହି ସ୍ୱଳ୍ପ ଉପାର୍ଜନ ଭିତରୁ ଯଦି କିଛି ଶକ୍ତି ଯୌନ ସଂପର୍କରେ ଅପବ୍ୟୟ କରାଯାଏ, ତେବେ ସମଗ୍ର ସ୍ୱାସ୍ଥ୍ୟ ଉପରେ, ଜୀବନଯାତ୍ରା ଉପରେ ତାହାର ସିଧାସଳଖ ପ୍ରଭାବ ପଡ଼ିବ । ବିଷୟାସକ୍ତ ମନୁଷ୍ୟ ନିଜର ଶ୍ରମଶୀଳତା, ତେଜସ୍ୱିତା, ସ୍ଫୂର୍ତ୍ତି, ନୀରୋଗ ଅବସ୍ଥା, ସ୍ମରଣଶକ୍ତି, ପ୍ରତିଭା, ସାହସ, ଧୈର୍ଯ୍ୟ, ସନ୍ତୁଳନ

ଆଦି ସବୁ ଶାରୀରିକ ଓ ମାନସିକ ବିଶେଷତ୍ୱ ହରାଇ ବସିଛି । ଏହି ଅପବ୍ୟୟର ବୃଦ୍ଧି ଅନୁପାତରେ ମନୁଷ୍ୟ ଅନ୍ତଃସାରଶୂନ୍ୟ ହୋଇଯାଉଛି । ପ୍ରତ୍ୟେକ କାମୁକ ବ୍ୟକ୍ତି ନିଜ ଗଳାରେ ଆସକ୍ତିର ଶିକୁଳି ବାନ୍ଧି ହେଉଥିବାର ଅନୁଭବ କରୁଛି । ଏହା ଏକପ୍ରକାର ସ୍ୱେଚ୍ଛା ପ୍ରଣୋଦିତ, ହସିଖେଳି ମନ୍ଦଗତିରେ କରାଯାଉଥିବା ଆତ୍ମହତ୍ୟା ଅଟେ ।

ପ୍ରଜନନ ଯେତେବେଳେ ଉଚିତ ଏବଂ ଆବଶ୍ୟକ ହୁଏ, କେବଳ ସେହି ଉଦ୍ଦେଶ୍ୟରେ ହିଁ ଉଚିତ ମର୍ଯ୍ୟାଦା ଭିତରେ କାମ ସେବନ ନିୟମକୁ କୋହଳ କରାଯାଇ ପାରେ । ଯଦି ନିଜର କିମ୍ବା ସାଥୀର ସ୍ୱାସ୍ଥ୍ୟ ଅଥବା ମାନସିକ ଅବସ୍ଥା ଉପଯୁକ୍ତ ନ ଥାଏ, ତେବେ ଏପରି କ୍ରିୟାର କୌଣସି ଅର୍ଥ ରହେ ନାହିଁ । ଅତ୍ୟନ୍ତ ଆବଶ୍ୟକ ନହେଲେ, ଉଭୟ ପକ୍ଷର ପୂର୍ଣ୍ଣ ସମ୍ମତି ନ ଥିଲେ, ସେପର୍ଯ୍ୟନ୍ତ ଏହି ପ୍ରସଙ୍ଗକୁ ଉପେକ୍ଷା କରାଯାଇ ପାରେ, ପତି ଓ ପତ୍ନୀଙ୍କ ମଧ୍ୟରେ ଏହିପରି ଧୈର୍ଯ୍ୟ, ବୁଝାମଣା ରହିବା ଆବଶ୍ୟକ । ସାଥୀର ଅନିଚ୍ଛା ଥିଲେ ତାକୁ ବାଧ କରିବା ବଳାତ୍କାର ସମାନ ଏକ ଅପରାଧ । ବିବାହିତ ସାଥୀ ସହିତ ଏହା କରାଗଲେ ସୁଦ୍ଧା ତାହା ଅପରାଧ ରୂପେ ପରିଗଣିତ । ଆଇନ ହୁଏତ ଏହାକୁ ଦଣ୍ଡନୀୟ ମନେ କରି ନ ପାରେ । କିନ୍ତୁ ନୈତିକ ଦୃଷ୍ଟିରୁ ଏହାକୁ ନିର୍ଲଜ ବଳାତ୍କାର ବୋଲି କୁହାଯିବ । ଯେଉଁ ପ୍ରସଙ୍ଗ ଦ୍ୱାରା ସାଥୀର ମନ ରୋଷ ଓ କ୍ଷୋଭଯୁକ୍ତ ହୋଇଯାଏ, ସେ ପ୍ରସଙ୍ଗ ସୁନିଶ୍ଚିତ ରୂପେ କାମୁକ ପକ୍ଷ ନିମନ୍ତେ ସବୁ ଦୃଷ୍ଟିରୁ କ୍ଷତିକାରକ ହେବ । କ୍ଷଣିକ ଉଦ୍‌ବେଗ ଶାନ୍ତ କରିବା ଫଳରେ ଯେତିକି ପ୍ରସନ୍ନତା ମିଳେ, ସମୟକ୍ରମେ ତାହାର ପ୍ରତିକ୍ରିୟା ଅନେକ ଗୁଣ ଅପ୍ରସନ୍ନତାଯୁକ୍ତ ପରିସ୍ଥିତି ନେଇ ସମ୍ମୁଖକୁ ଆସିଥାଏ । ତେଣୁ ପ୍ରତ୍ୟେକ ବୁଦ୍ଧିମାନ ପତିପତ୍ନୀ ମୂଳରୁ ଶେଷ ପର୍ଯ୍ୟନ୍ତ କାହାର କ୍ଷତି ବା ଅସୁବିଧା ନ କରାଇବା ପାଇଁ ମାନସିକ ଅବସ୍ଥା ଗଠନ କରିନେବା ଆବଶ୍ୟକ । ଦାମ୍ପତ୍ୟ ଜୀବନ ଭିତରେ ବ୍ରହ୍ମଚର୍ଯ୍ୟ ନିଷ୍ଠାର ଯେତିକି ପ୍ରଭାବ ପଡ଼ିବ, ପାରିବାରିକ ସଦ୍‌ଭାବ ତଦନୁପାତରେ ପ୍ରଗାଢ଼ ହୋଇ ଉଠିବ ଏବଂ ଯେଉଁ ଲାଭ ସକାଶେ ବିବାହର ମୂଳ ପ୍ରୟୋଜନ ଉଦ୍ଦିଷ୍ଟ, ସେହି ଲାଭ ମିଳିବ ।

ଜନନେନ୍ଦ୍ରିୟର ମର୍ଯ୍ୟାଦା ରହିତ ଉପଯୋଗ ଯୌନ ରୋଗ ଉତ୍ପନ୍ନ କରିଥାଏ । ବିଶେଷ ଭାବରେ ନାରୀମାନେ ଏହା ଦ୍ୱାରା ଅଧିକ କ୍ଷତିଗ୍ରସ୍ତ ହୋଇଥାନ୍ତି । ସାଧାରଣ ନାରୀ ମାସରେ ଥରେ ଦୁଇଥରରୁ ଅଧିକ କାମକ୍ରୀଡ଼ାର ଚାପ ସହିପାରେ ନାହିଁ । ପ୍ରଜନନ ଦୃଷ୍ଟିରୁ ପ୍ରତ୍ୟେକ ସନ୍ତାନ ପ୍ରସବ ମଝିରେ ଅତି କମ୍‌ରେ ପାଞ୍ଚ ବର୍ଷର ବ୍ୟବଧାନ ରହିବା ଉଚିତ । ଶୀଘ୍ର ଶୀଘ୍ର ସନ୍ତାନ ପ୍ରସବ କଲେ ଏବଂ କାମକ୍ରୀଡ଼ାର ଚାପ ଅଧିକ ଅଧିକ ହେଲେ ନାରୀ ନିଜର ଶାରୀରିକ ସ୍ୱାସ୍ଥ୍ୟ ସହିତ ମାନସିକ ସ୍ୱାସ୍ଥ୍ୟ ମଧ୍ୟ ହରାଇଥାଏ । ଦୈନିକ କାମକ୍ରୀଡ଼ାର ସ୍ୱରୂପ ହସ, ଖେଳ, ବିନୋଦ, ମନୋରଞ୍ଜନ ଭିତରେ ସୀମାବଦ୍ଧ ରହିଲେ ଭଲ । ହର୍ଷ, ଉଲ୍ଲାସ ବଢ଼ାଉଥିବା କାମ କେବେକେବେ କଲେ ଚିତ୍ତ ପ୍ରସନ୍ନ ରହେ । ପରସ୍ପର ମଧ୍ୟରେ ଘନିଷ୍ଠତା ବଢ଼େ ଏବଂ ସାନ୍ନିଧ୍ୟ ହେତୁ କେବଳ ମନୋବୈଜ୍ଞାନିକ ନୁହେଁ, କାମ ପ୍ରୟୋଜନ ମଧ୍ୟ ପୂରଣ ହୋଇଥାଏ । ଯୌନ ସଂପର୍କକୁ ଅତି ସୀମିତ କରାଯିବା ଉଚିତ । ବର୍ତ୍ତମାନ ଏହି ବିଡ଼ମ୍ବନା ଯୋଗୁଁ ମନୁଷ୍ୟ କେବଳ ନିଜର ସ୍ୱାସ୍ଥ୍ୟ ନଷ୍ଟ କରି ନଥାଏ, ବରଂ ପ୍ରତିକ୍ରିୟାର ଆନନ୍ଦରୁ ବଞ୍ଚିତ ହୋଇଥାଏ । କାମୁକ ବ୍ୟକ୍ତି ଅତିନି କୃଷ୍ଟ ଓ ଅଗଭୀର ଆନନ୍ଦ ଉପଭୋଗ କରିଥାଏ । ସେଥିରେ ଯେଉଁ ଉଚ୍ଚସ୍ତରର ଉଲ୍ଲାସ ଅଛି, ତାହା ଲାଭ କରିବା ପାଇଁ ଦୀର୍ଘକାଳୀନ ସଂଗୃହୀତ ଶକ୍ତି ଥିବା ଦରକାର । ଯୌନ ରୋଗଠାରୁ ଦୂରରେ ରହିବା ପାଇଁ ଏପରି ଭାବରେ ସତର୍କ ରହିବା ଆବଶ୍ୟକ ।

ଜନନେନ୍ଦ୍ରିୟ ସିଧାସଳଖ ମସ୍ତିଷ୍କ ସହିତ ସଂପୃକ୍ତ । ଏହା ମନେରଖିବା କଥା । ଜନନେନ୍ଦ୍ରିୟ ଜନିତ ବିକୃତିର ପ୍ରଭାବ ସିଧାସଳଖ ମସ୍ତିଷ୍କ ଉପରେ ପଡ଼େ । ମନୋବୈଜ୍ଞାନିକଗଣଙ୍କ ମତ ଅନୁସାରେ ଉଚିତ ସମୟରେ ଉଚିତ କାମ ସେବନର ସୁଯୋଗ ନ ମିଳିଲେ ଅପସ୍ମାର, ମୂର୍ଚ୍ଛା, ହିଷ୍ଟିରିଆ, ଅନିଦ୍ରା, ବିରକ୍ତି, ସ୍ମରଣଶକ୍ତିର ଦୁର୍ବଳତା, ମୁଣ୍ଡବ୍ୟଥା, ହୃଦ୍‌ରୋଗ, ନାଡ଼ୀ ବିକୃତି ଇତ୍ୟାଦି ରୋଗ ଉତ୍ପନ୍ନ ହୋଇଥାଏ । ଅତି କାମ ସେବନ ମଧ୍ୟ ଏହିପରି ଉଦ୍‌ବେଗ ଉତ୍ପନ୍ନ କରିଥାଏ । ଲମ୍ପଟର ଶରୀର ଯେତେ କ୍ଷୀଣ ହୁଏ, ତା'ର ମନ ତାହାଠାରୁ ଅଧିକ ବିକ୍ଷିପ୍ତ ଓ ଅବ୍ୟବସ୍ଥିତ ହୋଇଥାଏ । ଯେଉଁମାନେ କାମ ସେବନରେ

ସୀମା ଅତିକ୍ରମ କରିଯାନ୍ତି, ସେମାନେ ନାନାପ୍ରକାର ମାନସିକ ରୋଗର ଶିକାର ହୁଅନ୍ତି । ଏହି ପ୍ରକାର ଦୁରୁପଯୋଗ ଉଭୟଙ୍କ ପକ୍ଷରେ କ୍ଷତିକାରକ । କିନ୍ତୁ ନାରୀର କ୍ଷତି ଅସାଧାରଣ । ତେଣୁ ବିବାହିତ ଜୀବନକୁ କାମକ୍ରୀଡ଼ାର ଉଚ୍ଛୃଙ୍ଖଳ ଉପଯୋଗ ଯୋଗୁଁ ମୁକ୍ତ ସ୍ୱାଧୀନତା ବୋଲି ମନେକରିବା ଅନୁଚିତ । ଅବିବାହିତ ଜୀବନରେ ଯେପରି ସତର୍କତା ଅବଲମ୍ବନ କରାଯାଇଥିଲା, ବିବାହିତ ଜୀବନରେ ମଧ୍ୟ ସେପରି ଭାବିବା ଦରକାର । ସର୍ବତୋମୁଖୀ ପ୍ରତିଭା ଏବଂ ବ୍ୟକ୍ତିତ୍ୱ ବିକାଶ ଉପରେ ଏହାର ସିଧାସଳଖ ପ୍ରଭାବ ପଡ଼େ । ସୁହାଗିନୀଙ୍କ ତୁଳନାରେ ବିଧବା ଓ କୁମାରୀମାନେ ଅଧିକ ସତେଜ ଓ ସ୍ଫୂର୍ତ୍ତିଯୁକ୍ତ ହୋଇଥାନ୍ତି । ସେମାନଙ୍କ ଅନ୍ତଃଶକ୍ତିର ଅନାବଶ୍ୟକ କ୍ଷରଣ ନ ହେବା ହିଁ ଏହାର ମୁଖ୍ୟ କାରଣ ଅଟେ । ବିବାହିତାମାନେ ମଧ୍ୟ ଏହି ଲାଭରୁ ବଞ୍ଚିତ ହେବା ଉଚିତ ନୁହେଁ ।

କାମ ସେବନ ପ୍ରୟୋଗ ଦ୍ୱାରା ଅତି ବେଗରେ ଶରୀରର ବିଦ୍ୟୁତ୍ ଶକ୍ତିର ପ୍ରତ୍ୟାବର୍ତ୍ତନ ହୋଇଥାଏ । ଏହା ହିଁ କାମ ସେବନର ବୈଜ୍ଞାନିକ ସ୍ୱରୂପ । ମାନବୀୟ ବିଦ୍ୟୁତ୍ ଶରୀରରେ ଥାଏ । କିନ୍ତୁ ଚେତନ ସଂସ୍ଥାନରେ ତାହାର ଭଣ୍ଡାର ରହେ । ଯୌନ ସଂସ୍ଥାନର ମୂଳ ଦେଶରେ ଏହି ବିଦ୍ୟୁତ୍ ଶକ୍ତି ଅପର୍ଯ୍ୟାପ୍ତ ମାତ୍ରାରେ ରହିଥାଏ । ଜନନେନ୍ଦ୍ରିୟ ନିକଟକୁ ଆସିବା ସଙ୍ଗେ ସଙ୍ଗେ ଏହି ପ୍ରସୁପ୍ତ ଶକ୍ତି ଜାଗ୍ରତ ଓ ପ୍ରବଳ ହୋଇଉଠେ । ଏହାପରେ ଉଭୟ ପକ୍ଷ ନିଜର ବିଦ୍ୟୁତ୍ ଶକ୍ତି ବିନିମୟ କରିବାରେ ଲାଗିପଡ଼ନ୍ତି । ଋଣ ବିଦ୍ୟୁତ୍ ଧାରା ଧନ ବିଦ୍ୟୁତ୍ ଧାରା ଆଡ଼କୁ ଓ ଧନ ବିଦ୍ୟୁତ୍ ଧାରା ଋଣ ଦିଗରେ ଧାଇଁ ଯା'ନ୍ତି । ନର ନାରୀ ପାଇଁ ନାରୀ ନର ପାଇଁ ନିଜର ଶକ୍ତି ପ୍ରବାହ ପ୍ରସ୍ତୁତ କରିଥାନ୍ତି । ଏହି ମିଳନ ଓ ପ୍ରତ୍ୟାବର୍ତ୍ତନର ପରିଣାମ କାମ ସେବନ ସମୟରେ ଆନନ୍ଦ ରୂପେ ଅନୁଭୂତ ହୋଇଥାଏ । ଏହା ବିଶୁଦ୍ଧ ରୂପେ ପ୍ରାଣ ଓ ରୟି ଶକ୍ତିର, ଅଗ୍ନି ଓ ସୋମର ପରସ୍ପର ପ୍ରତ୍ୟାବର୍ତ୍ତନ ଜନିତ ଅନୁଭୂତି ଅଟେ । ଏ ପ୍ରୟୋଗ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହା ଦ୍ୱାରା ବ୍ୟକ୍ତିତ୍ୱର ବିକାଶ ହୋଇଥାଏ, ବିନାଶ ମଧ୍ୟ ସମ୍ଭବ ହୁଏ । ପ୍ରବଳ ବିଦ୍ୟୁତ୍‌ଧାରା ଥିବା ପକ୍ଷ ଦୁର୍ବଳ ପକ୍ଷକୁ ନିଜର ଅନୁଦାନ ଦେଇ ତାକୁ ଉନ୍ନତ ଓ ପରିପୁଷ୍ଟ କରିବାରେ ସାହାଯ୍ୟ କରେ । କିନ୍ତୁ ଯାହାର

ଶରୀରରେ କ୍ଷୀଣ ପ୍ରାଣ ଥାଏ, ସେ ନିଜ ସାଥୀର କ୍ଷତିସାଧନ କରେ । ଏହାର ପରିଣାମ ସ୍ୱରୂପ ଉଭୟ ଶାରୀରିକ ଦୃଷ୍ଟିରୁ ନ ହେଲେ ସୁଦ୍ଧା ପ୍ରାଣଶକ୍ତି ଦୃଷ୍ଟିରୁ ସମାନ ସ୍ତରକୁ ଆସିପାରନ୍ତି ।

ବେଶ୍ୟା ନିୟମିତ ରୂପେ ଶରୀରର କ୍ଷରଣ କଲେ ସୁଦ୍ଧା ନିଜର ରୂପ ସୌନ୍ଦର୍ଯ୍ୟ ଯଥାବତ୍ ରଖିପାରେ । ଶରୀରଶାସ୍ତ୍ରୀମାନେ ଏହାର କାରଣ କହିପାରିବେ ନାହିଁ । ପ୍ରାଣବିଦ୍ୟା ଜାଣିଥିବା ବ୍ୟକ୍ତିଙ୍କ ନିକଟରେ ଏହାର ଉତ୍ତର ରହିଛି । ବେଶ୍ୟା ମନସ୍ୱୀ କାମୁକମାନଙ୍କଠାରୁ ଶକ୍ତି ଶୋଷଣ କରେ । ଯେଉଁ ଅବସ୍ଥା ବଳରେ ସାଧାରଣ ଗୃହସ୍ଥନାରୀ ମରଣାପନ୍ନ ଅବସ୍ଥାକୁ ଆସିପାରେ, ସେ ଅବସ୍ଥାରେ ସୁଦ୍ଧା ସେ ନିଜ ଚେହେରାରେ ଚମକ ଓ ଶରୀରରେ ସ୍ଫୂର୍ତ୍ତି ରକ୍ଷା କରିଥାଏ । ତାହାର ପ୍ରେମିକ ନୀଚ ସ୍ତରର, ରୋଗୀ ବା ମୂର୍ଖ ହୋଇଥିଲେ, ସେ ନିଜର ସ୍ୱାସ୍ଥ୍ୟ ଓ ତେଜ କେବେହେଲେ ସ୍ଥିର ରଖିପାରିବ ନାହିଁ । ଶାରୀରିକ ଦୃଷ୍ଟିରୁ ଯୁବାବସ୍ଥାରେ ନର ଓ ନାରୀଠାରେ ବିଦ୍ୟୁତ୍ ଶକ୍ତିର ମାତ୍ରା ଅଧିକ ଥାଏ । ଏହା ଫଳରେ ତାହାର ଆକର୍ଷଣ ଅନ୍ୟ ପକ୍ଷରେ କାମ ସେବନର ଲାଳସାକୁ ବଳଶାଳୀ କରେ । ଶରୀରରେ ତ ବିଦ୍ୟୁତ୍ ଶକ୍ତି ଥାଏ, କିନ୍ତୁ ତାହା ସାମାନ୍ୟ ଏବଂ ନୀଚସ୍ତରର ହୋଇପାରେ । ମସ୍ତିଷ୍କ ଓ ହୃଦୟ ଭିତରେ ଏହି ଶକ୍ତି ଭଣ୍ଡାର ଥାଏ । ସୁସ୍ଥ ଓ ସୁନ୍ଦର ବ୍ୟକ୍ତି ଯଦି ମନୋବଳ ଦୃଷ୍ଟିରୁ ନୀଚ ସ୍ତରର ହୁଏ, ତେବେ ଏହି ଦୃଷ୍ଟିରୁ ତାକୁ ଦୁର୍ବଳ ମନେ କରାଯାଇପାରେ । କୁରୂପ ଓ ପରିଣତ ବୟସର ବ୍ୟକ୍ତିଠାରେ ମଧ୍ୟ ତାହାର ଆନ୍ତରିକ ସ୍ତର ଅନୁରୂପ ପ୍ରବଳ ପ୍ରାଣଶକ୍ତି ରହିପାରେ । ଅସଲ କଥା ହେଉଛି– ଶାରୀରିକ ଅବସ୍ଥା ସହିତ ପ୍ରାଣ କ୍ଷମତାର ସଂପର୍କ ଅତ୍ୟନ୍ତ ନଗଣ୍ୟ । ଯେକୌଣସି ବୟସରେ ମାନସିକ ସ୍ଥିତି ଅନୁସାରେ ପ୍ରାଣ ପ୍ରବଳ ଓ ଦୁର୍ବଳ ହୋଇପାରେ ଏବଂ ତଦନୁସାରେ ସାଥୀର ଲାଭ ବା କ୍ଷତି ହୋଇପାରେ ।

ବ୍ରହ୍ମଚର୍ଯ୍ୟ ସମସ୍ତଙ୍କ ପାଇଁ ଉଚିତ । କିନ୍ତୁ ପ୍ରାଣ ସମ୍ପନ୍ନ ଉଚ୍ଚସ୍ତରର ବ୍ୟକ୍ତିତ୍ୱ ପକ୍ଷରେ ଏହା ଅତ୍ୟନ୍ତ ଆବଶ୍ୟକ । ସେମାନେ ଏହିପ୍ରକାର ବ୍ୟତିକ୍ରମ କରି ନିଜର ପ୍ରଗତିକୁ ବାଧା ଦେବେ । ସେମାନେ ନିଜର ଯେତେ କ୍ଷତି କରିବେ,

ସାଥୀର ସେତିକି ଉପକାର କରିପାରିବେ ନାହିଁ । ତେଣୁ ବ୍ରହ୍ମଚର୍ଯ୍ୟର ମହତ୍ତ୍ୱ ସନ୍ଦେହ ରହିତ । ପ୍ରାଣକୁ ସଂଚୟ କରି ରଖି କେବେ କେବେ କାମ କ୍ରୀଡ଼ାରେ ତାହା ଉପଯୋଗ କଲେ ସାଥୀକୁ ସାହାଯ୍ୟ କରିବା ଦୃଷ୍ଟିରୁ ତାହା ବୁଦ୍ଧିମାନର କାମ ହେବ । କାମୁକର ବାହାର ଚକମକିଆ ଦେଖାଗଲେ ସୁଦ୍ଧା ତା ଭିତର ପୂରାପୂରି ଫମ୍ପା । ସେମାନେ ଯାହା ସହିତ ସଂପର୍କ କରିଥାନ୍ତି, ତାହାର ଶକ୍ତି ଶୋଷଣ କରିଥାନ୍ତି । ଲମ୍ପଟ ବ୍ୟକ୍ତି ସହିତ ଦାମ୍ପତ୍ୟ ଜୀବନ ଯାପନ କରି ତାହାର ସାଥୀ ଶାରୀରିକ ଓ ମାନସିକ କ୍ଷତିର ସମ୍ମୁଖୀନ ହୋଇଥାଏ । କ୍ଷୀଣ ପ୍ରାଣଥିବା ବ୍ୟକ୍ତି ସମର୍ଥ ପକ୍ଷକୁ କିଛି ସାହାଯ୍ୟ କରିପାରେ ନାହିଁ । ବ୍ରହ୍ମଚାରୀ ଓ ବ୍ରହ୍ମଚାରିଣୀ ହିଁ ନିଜର ବିଶେଷ ବିଦ୍ୟୁତ୍ ଧାରା ମାଧ୍ୟମରେ ପରସ୍ପରକୁ ଲାଭାନ୍ୱିତ କରିପାରନ୍ତି । ଯେଉଁ ସ୍ତରର କାମ ସେବନ ଦ୍ୱାରା ପ୍ରବଳ ଶକ୍ତି ପ୍ରବାହ ମାଧ୍ୟମରେ ଉଭୟ ପକ୍ଷ ନିଜର ଆବଶ୍ୟକତା ପୂରଣ କରିଥାନ୍ତି ଓ ଅତୃପ୍ତି ନିବାରଣ କରିଥାନ୍ତି, କେବଳ ସେହି ସ୍ତରର କାମ ସେବନ ହିଁ ପ୍ରଶଂସନୀୟ ।

ସନ୍ତାନ ଉତ୍ପାଦନର ସତ୍‌ପରିଣାମ ସଂଯମଶୀଳତା ଉପରେ ନିର୍ଭର କରେ । କାମୁକତା କ୍ଷେତ୍ରରେ ଅତି କରୁଥିବା ଦମ୍ପତି କିଛିଦିନ ପରେ ନିଜର ଜନନେନ୍ଦ୍ରିୟର ମୂଳସତ୍ତା ହରାଇ ବସନ୍ତି । ଏପରି ପୁରୁଷ ନପୁଂସକ ଓ ନାରୀ ବନ୍ଧ୍ୟା ହେବାର ଦେଖାଦେଇଥାଏ । ଗର୍ଭ ସ୍ଥାପନା ହେଲେ ସୁଦ୍ଧା ଗର୍ଭପାତ ହୋଇଯାଏ କିମ୍ବା ଦୁର୍ବଳ ବା ମୃତ ସନ୍ତାନ ଜନ୍ମ ହେବାର ଆଶଙ୍କା ଥାଏ । ଏମିତି ମାତା ପିତା ମୂର୍ଖ, ଦୁର୍ଗୁଣଯୁକ୍ତ, ରୋଗୀ ବା ଅବିକଶିତ ସନ୍ତାନ ହିଁ ଉତ୍ପନ୍ନ କରିଥାନ୍ତି । ସମର୍ଥ ସନ୍ତାନ ଲାଭ ପାଇଁ ଯେଉଁ ପରିପକ୍ୱ ଶୁକ୍ରର ଆବଶ୍ୟକତା ରହେ, ତାହା କେବଳ ବ୍ରହ୍ମଚାରୀ ଜୀବନରେ ସମ୍ଭବ । ପରିପୁଷ୍ଟ ଶରୀରଯୁକ୍ତ ଯୁବକ ଓ ଯୁବତୀ ମିଶି ପୁଷ୍ଟ ଶରୀରଯୁକ୍ତ ସନ୍ତାନକୁ ଜନ୍ମ ଦେଇ ପାରନ୍ତି । କିନ୍ତୁ ତାହାର ମାନସିକ ଶକ୍ତି, ବୁଦ୍ଧି ଓ ତେଜ ଅପୂର୍ଣ୍ଣ ରହିଯାଏ । ଆନ୍ତରିକ ସମସ୍ତ ବିଶେଷତ୍ୱ ଓ ବିଭୂତି ପ୍ରାଣଶକ୍ତି ସହିତ ସଂପୃକ୍ତ ବ୍ରହ୍ମଚର୍ଯ୍ୟ ପ୍ରାଣକୁ ପରିପକ୍ୱ କରିଥାଏ । ତେଣୁ ଯେଉଁମାନେ ଆନ୍ତରିକ ଦୃଷ୍ଟିରୁ ମେଧାବୀ, ପ୍ରତିଭାବାନ ଓ ଦୂରଦର୍ଶୀ ସନ୍ତାନ ଲାଭ କରିବାର ଅଭିଳାଷ ପୋଷଣ କରନ୍ତି, ସେମାନେ ନିଜ

ଅନ୍ତଃକ୍ଷମତାର ନିରାପତ୍ତା ଓ ପରିପୁଷ୍ଟି ପ୍ରତି ଦୃଷ୍ଟି ଦେବା ଦରକାର । ଅଧିକ ସଂଯମ ଦ୍ୱାରା ଏହା ଲାଭ କରିବା ସମ୍ଭବ ହୁଏ । ତେଣୁ ଗୃହସ୍ଥ ହୋଇ ସୁଦ୍ଧା ବ୍ରହ୍ମଚର୍ଯ୍ୟ ଧାରଣ କରି ନିଜ ନିଜର ତଥା ସନ୍ତାନର ଭବିଷ୍ୟତକୁ ଉଜ୍ଜ୍ୱଳ କରିବା ବିଷୟ ଚିନ୍ତା କରିବା ଉଚିତ । ନୀଚ ମନୋରଞ୍ଜନ ଏବଂ ଇନ୍ଦ୍ରିୟ ତୃପ୍ତି ଉଦ୍ଦେଶ୍ୟରେ କାମ ସେବନ ଅନୁଚିତ । ପ୍ରାଣ ପ୍ରତ୍ୟାବର୍ତ୍ତନ ଦ୍ୱାରା ପରସ୍ପରର ଅଭାବ ପୂର୍ଣ୍ଣ କରାଯାଇ ପାରିଲେ ହିଁ, ତାହାର ସଦୁପଯୋଗ ହୋଇଥାଏ । କେବଳ ପ୍ରାଣବାନ ଏବଂ ପ୍ରବୁଦ୍ଧ ପତିପତ୍ନୀ ପରସ୍ପର ସହଯୋଗ ଦ୍ୱାରା ଏହି ପ୍ରୟୋଜନ ପୂରଣ କରିପାରନ୍ତି । ନିଜ ଦେଶ, ସମାଜ ଓ ବଂଶର ମୁଖ ଉଜ୍ଜ୍ୱଳ କରିବାରେ ସମର୍ଥ ସନ୍ତାନ ଉତ୍ପନ୍ନ କରିବା ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ । ଏଥିପାଇଁ ଇନ୍ଦ୍ରିୟ ସଂଯମର ସାଧନା କରିବାକୁ ହୁଏ । ପ୍ରାଣକୁ ପରିପୁଷ୍ଟ କରୁଥିବା ସତ୍‌ପ୍ରବୃତ୍ତି ପରିପୂର୍ଣ୍ଣ ବ୍ୟକ୍ତିତ୍ୱ ଗଠନ କରିବାକୁ ପଡ଼େ । ବସ୍ତୁତଃ ସୁଯୋଗ୍ୟ ସନ୍ତାନ ଉତ୍ପାଦନ କରିବା ଏକ ସାଧନା ଅଟେ । ଏ ଉଦ୍ଦେଶ୍ୟରେ କେବଳ ସଂଯତ ନୁହେଁ, ମନସ୍ୱୀ ହେବାକୁ ପଡ଼େ ।

ଦୁଇ ବସ୍ତୁର ମିଳନରେ ତୃତୀୟ ବସ୍ତୁ ପ୍ରସ୍ତୁତ ହେବାର ପ୍ରକ୍ରିୟାକୁ ରସାୟନ କୁହାଯାଏ । ଏହାର ଅନ୍ୟନାମ କେମିଷ୍ଟ୍ରି (Chemistry) । ରଜ ଓ ବୀର୍ଯ୍ୟର ମିଳନ ଫଳରେ ଭ୍ରୂଣର ଉତ୍ପତ୍ତି ହୋଇଥାଏ । ନଅ ମାସର ସମୟ ମାତୃଗର୍ଭରେ କଟାଇ ସେ ଭ୍ରୂଣ ସନ୍ତାନ ରୂପେ ଭୂମିଷ୍ଠ ହୁଏ । ଏହା ଗର୍ଭଧାରଣ ବା ପ୍ରଜନନର ସ୍ଥୂଳ ରୂପ । ଏହା ବ୍ୟତୀତ ଏକ ପ୍ରାଣ ପ୍ରତ୍ୟାବର୍ତ୍ତନ ମଧ୍ୟ ହୋଇଥାଏ । ଅନେକ ସମୟରେ ଏହାକୁ ଅନେକ ରୂପରେ ଦେଖାଯାଇପାରେ । ଶିଷ୍ୟର ପ୍ରାଣରେ ଗୁରୁ ନିଜର ପ୍ରାଣ ପ୍ରତଷ୍ଠାପନ କରି ତାହାର ପ୍ରତିଭା, ମେଧା ଓ ବିଦ୍ୟାକୁ ପ୍ରଖର କରିପାରନ୍ତି । କୌଣସି ବିଦ୍ୟାଳୟର ଶିକ୍ଷକ ଏହା କରିପାରନ୍ତି ନାହିଁ । ସେମାନେ କେବଳ ଜ୍ଞାନ ଦେଉଥିବା ପାଠ ପଢ଼ାଇ ପାରନ୍ତି । ଶିଷ୍ୟକୁ ଗୁରୁ ସମାନ ପ୍ରଖର କରିପାରୁଥିବା ବିଦ୍ୟା କେବଳ ତପସ୍ୱୀ ଗୁରୁଙ୍କ ମାଧ୍ୟମରେ ଉପଲବ୍ଧ ହୋଇଥାଏ । ଯୋଗୀ ନିଜ ସାଧକମାନଙ୍କଠାରେ ଶକ୍ତିପାତ କରିପାରନ୍ତି । ସେ ଶିଷ୍ୟକୁ ନିଜର ତପ ଶକ୍ତି ପ୍ରଦାନ କରି ତାକୁ ଉଚ୍ଚ ଭୂମିକାରେ

ଅଧିଷ୍ଠିତ କରିପାରନ୍ତି । ମରଣାସନ୍ନ ରୋଗୀର ଶରୀରରେ ରକ୍ତ ଦେଇ ତାଙ୍କୁ ପୁନର୍ଜୀବନ ପ୍ରଦାନ କରାଯାଇପାରେ । ସେହିପରି ଦୁର୍ବଳ ପ୍ରାଣକୁ ସବଳ ପ୍ରାଣ କରିବାର କାର୍ଯ୍ୟ ଶକ୍ତି ପ୍ରତ୍ୟାବର୍ତ୍ତନ ପ୍ରକ୍ରିୟା ସମ୍ପନ୍ନ କରିଥାଏ । ଏହା ହିଁ କାମ ସେବନର ଉଚ୍ଚ ସ୍ତର । ଏହା କେବଳ ସନ୍ତାନ ଉତ୍ପାଦନ ସକାଶେ ଅଭୀଷ୍ଟ ନୁହେଁ, ବରଂ ଦୁଇ ପ୍ରାଣର ସମନ୍ୱୟରେ ଏକ ନବୀନ ପ୍ରତିଭା ବିକଶିତ କରିବା ଉଦ୍ଦେଶ୍ୟରେ ଏହା କରାଯାଇଥାଏ । ସତ୍ତ୍ୱଗୁଣଯୁକ୍ତ ସୌମ୍ୟ ଦମ୍ପତି ସାଧନା ରୂପେ ଯଦି କାମ ସେବନ କରନ୍ତି, ତାହାର ପ୍ରୟୋଜନ ଏକ ଅଦ୍‌ଭୁତ ପ୍ରତିଭାକୁ ଜନ୍ମ ଦେଇଥାଏ । ଆବଶ୍ୟକତା ଅନୁସାରେ ଏ ପ୍ରକ୍ରିୟା ଗୋଟିଏ ବା ଦୁଇଟି ଶରୀର ଉତ୍ପନ୍ନ କରିପାରେ । ଏହା ଉଚ୍ଚସ୍ତରୀୟ ଶିଶୁ ଜନ୍ମ ଅଟେ । ଏପରି କାମ ସେବନ ଅଭିଶାପ ନହୋଇ ବରଦାନ ହୁଏ । ବିଷକୁ ସଂଶୋଧିତ କରି ଔଷଧ ରୂପେ ବ୍ୟବହାର କରାଯାଏ । ସେତେବେଳେ ତାହା ବିଘାତକ ନ ହୋଇ ସଂଜୀବନୀ ହୋଇଯାଏ । କାମ ପ୍ରକ୍ରିୟାକୁ ବିଷୟରେ ପରିଣତ କରି ମରଣର ପଥ ପ୍ରଶସ୍ତ ନକରିବା ଉଚିତ । ବରଂ ତାହାକୁ ଅମୃତ କରି ଦୁଇ ଜଣଙ୍କର ଅସାଧାରଣ ଉତ୍କର୍ଷ ଓ ବିଶ୍ୱକଲ୍ୟାଣ କରିବାରେ ସମର୍ଥ ପ୍ରାଣ ପ୍ରୟୋଜନ ପୂରଣ କରାଯାଇପାରେ । ଏହା ପୂର୍ଣ୍ଣତଃ ଇଚ୍ଛାଧୀନ ଏବଂ ଏହା ନିଜର ବୁଦ୍ଧି ଓ ଦୂରଦର୍ଶିତା ଉପରେ ନିର୍ଭର କରେ ।

***

# ପରିଷ୍କୃତ ଅନ୍ତଃଚେତନା ଦ୍ୱାରା କାମ ପ୍ରବୃତ୍ତିର ନିୟନ୍ତ୍ରଣ

ଭାରତୀୟ ତତ୍ତ୍ୱବେତ୍ତାଗଣ ବହୁ ପୂର୍ବରୁ କାମୋତ୍ତେଜନାକୁ ମନୋଜ, ମଜସିଜ ନାମରେ ନାମିତ କରି ଏହି ଉଦ୍‌ବେଗ ଶାରୀରିକ ନୁହେଁ, ବରଂ ମାନସିକ ବୋଲି ସ୍ୱୀକାର କରିଛନ୍ତି । ଯଦି ମନ ଉପରେ ନିୟନ୍ତ୍ରଣ କରାଯାଇପାରେ, ତାହାକୁ ଈଶ୍ୱରଭକ୍ତି, କଳା, ସାଧନା, ଆଦର୍ଶ, ନିଷ୍ଠାରେ ନିୟୋଜନ କରାଯାଇପାରେ, ତେବେ ଯୁବକ ଅବସ୍ଥାରେ ଶରୀର ତଥା ମନରେ ବ୍ରହ୍ମଚାରୀ ହୋଇ ଜୀବନ ଯାପନ କରାଯାଇପାରେ । ବିପରୀତ ପକ୍ଷରେ ଶାରୀରିକ ନିୟନ୍ତ୍ରଣ ରକ୍ଷା କରି ସୁଦ୍ଧା ଯଦି ମାନସିକ ଉତ୍ତେଜନା ରହେ, ତେବେ ସାଧନା ଗ୍ରନ୍ଥରେ ବର୍ଣ୍ଣିତ ତାହାର ମାହାତ୍ମ୍ୟର ଲାଭ ମିଳି ନଥାଏ । ଦୃଷ୍ଟିକୋଣରେ ପରିବର୍ତ୍ତନ ହିଁ ଇନ୍ଦ୍ରିୟ ନିଗ୍ରହର ପ୍ରଧାନ ଆଧାର । ଆହାର ବିହାରରେ ସଂଯମ ଦ୍ୱାରା ସେଥିରେ ସାମାନ୍ୟ ସାହାଯ୍ୟ ମିଳିପାରେ ।

ସୁନ୍ଦର ଓ ପରିପୁଷ୍ଟ ଅବସ୍ଥାରେ ଥିବା ନରନାରୀ ଅଧିକ କାମତୃପ୍ତି ଲାଭ କରୁଥିବେ ଏବଂ ସୁସନ୍ତାନ ଉତ୍ପନ୍ନ କରିବାରେ ସମର୍ଥ ହେଉଥିବେ । ସାଧାରଣତଃ ଏହା ହିଁ ଲୋକମାନଙ୍କର ଧାରଣା । କିନ୍ତୁ ଏହା ବୈଜ୍ଞାନିକ ତଥ୍ୟର ବିପରୀତ । ମନୁଷ୍ୟର ଚେତନାତ୍ମକ ବିଦ୍ୟୁତ୍ ଶକ୍ତି ହିଁ କାମୋତ୍ତେଜନା ଉତ୍ପନ୍ନ କରିଥାଏ । ଏହାର ପ୍ରାବଲ୍ୟ ସହିତ ଯୌନତୃପ୍ତି ଓ ଉତ୍କୃଷ୍ଟ ପ୍ରଜନନ ସଂପୃକ୍ତ । ଶରୀର ଗଠନ କାମୋଲ୍ଲାସ ସହିତ ସିଧାସଳଖ ସଂପୃକ୍ତ– ଏହି ଭ୍ରମ କ୍ରମଶଃ ଦୂର ହେଉଛି । ବସ୍ତୁତଃ କାମୋତ୍ତେଜନା ବିଶୁଦ୍ଧ ରୂପେ ମାନସିକ ପ୍ରକ୍ରିୟା ଅଟେ । ତାହା ଯେଉଁ ବୟସରେ ଯେଉଁ ମାତ୍ରାରେ ଉଲ୍ଲାସିତ ଅବସ୍ଥାରେ ରହିବ, ସେ ଅବସ୍ଥାରେ କାମୋଦ୍‌ବେଗ ଦେଖାଦେବ ଏବଂ ସେହି ଅନୁପାତରେ ତୃପ୍ତି ତଥା ପ୍ରଜନନର ସଫଳତା ମିଳିବ ।

ଭ୍ରୂମଧ୍ୟ ଭାଗରେ ଅବସ୍ଥିତ ପିଟିଉଟରୀ ଗ୍ରନ୍ଥି ଏକ ବିଶେଷ ପ୍ରକାରର ହର୍‌ମୋନ୍‌ସ ଉତ୍ପନ୍ନ କରିଥାଏ । ଏହା କାମୋତ୍ତେଜନାକୁ ବୃଦ୍ଧି କରେ ଏବଂ ଯୌନ ଅବୟବକୁ ପରିପୁଷ୍ଟ କରେ । ବିଶେଷଜ୍ଞ ହର୍‌ମନ୍‌ସନ୍‌ଙ୍କ ବକ୍ତବ୍ୟ ହେଉଛି– କାମୁକତା ଭାବୁକତାର ଏକ ଆବେଶ ଏବଂ ଏହା ପ୍ରଜନନ ହର୍‌ମୋନ୍‌ସର ପ୍ରାବଲ୍ୟ ଉତ୍ପନ୍ନ କରିଥାଏ । ଏହି ଆଧାର ଉପରେ ଲୋକମାନଙ୍କଠାରେ କାମୋତ୍ତେଜନା ଅଳ୍ପ ବା ଅଧିକ ମାତ୍ରାରେ ଦେଖାଯାଇଥାଏ । କୌଣସି ପୂର୍ଣ୍ଣ ସୁସ୍ଥ ବ୍ୟକ୍ତି ନପୁଂସକ ହୋଇପାରେ । ବିପରୀତ ପକ୍ଷରେ ଦୁର୍ବଳ ଶରୀରରେ ଏହି ଆବେଶ ଅନିୟନ୍ତ୍ରିତ ଅବସ୍ଥାରେ ଦେଖାଦେଇପାରେ ।

ଚିକାଗୋ ମନୋବିଶ୍ଳେଷଣ ସଂସ୍ଥାର ଡା. ଥେରେସି ବେନେଡେକ୍‌ ତଥା ଜୀବରସାୟନଶାସ୍ତ୍ରୀ ଡା. ରୁବେନ୍‌ଷ୍ଟିନ୍‌ କହିଛନ୍ତି, ''ମାସିକ ଧର୍ମ ଶୀଘ୍ର ବା ବିଳମ୍ବରେ ହେବା, ଅଧିକ ବା ଅଳ୍ପସ୍ରାବ ହେବା ହର୍‌ମୋନ୍‌ ସ୍ରାବ ସହିତ ଅତି ଘନିଷ୍ଠ ରୂପେ ସଂପୃକ୍ତ । ରଜୋଦର୍ଶନର କିଛି ସମୟ ପୂର୍ବରୁ ଆରମ୍ଭ କରି ପରବର୍ତ୍ତୀ କିଛି ସମୟ ନାରୀ ପ୍ରବୃତ୍ତିରେ ସାଧାରଣତଃ ଭାବୁକତା ଓ ଉତ୍ତେଜନା ବୃଦ୍ଧି ପାଇଥାଏ । ସେ ସମୟରେ ସେ ଅଧିକ ଚଞ୍ଚଳ ହୋଇଥାଏ । ସେ ଯୌନ ଉତ୍ତେଜନା ବିଷୟ ଚିନ୍ତା କରେ କିମ୍ବା ବିରକ୍ତି ବା ଆକ୍ରୋଶ ପ୍ରକାଶ କରିଥାଏ । ଏହି ସମୟରେ ଗୃହ କଳହ ପ୍ରାୟ ଅଧିକ ହୋଇଥାଏ । ମହିଳାମାନଙ୍କ ଦ୍ୱାରା କରାଯାଉଥିବା ଅପରାଧର ତିନି ଚତୁର୍ଥାଂଶ ଏହି ସମୟ ଭିତରେ ଘଟିଥାଏ । ଲଣ୍ଡନରୁ ପ୍ରକାଶିତ ମେଡ଼ିକାଲ ନିଉଜ୍‌ ଟ୍ରିବିଉନ୍‌ ନାମକ ସାପ୍ତାହିକ ପତ୍ରିକାରେ ଡା. ଏନ୍‌.ଏନ୍‌.ଜାଫରୀଙ୍କ ଏକ ଗବେଷଣାପୂର୍ଣ୍ଣ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଆଲୋକ ଓ ଉଷ୍ଣତାର ପ୍ରଭାବ ଯୋଗୁ ଶୀଘ୍ର ଯୌବନ ଆସିବା ବିଷୟ ସେ ଲେଖିଥିଲେ । କେତେକ ଜୀବଙ୍କୁ ଗରମ ଓ ଆଲୋକଯୁକ୍ତ ବାତାବରଣରେ ରଖିବା ଦ୍ୱାରା ସେମାନଙ୍କର ଯୁବାବସ୍ଥା ଶୀଘ୍ର ଆସିଥିଲା ।

ବ୍ରିଟେନ୍‌ର ଅନ୍ୟ ଏକ ସାପ୍ତାହିକ ପତ୍ରିକା ''ଲାନ୍‌ସେଟ୍‌''ରେ ଅନ୍ୟ ଏକ ବିବରଣ ପ୍ରକାଶିତ ହୋଇଥିଲା । ଏଥିରେ ଲେଖାଥିଲା ଯେ ଇଂଲଣ୍ଡର

ତାପମାନ କ୍ରମଶଃ ବୃଦ୍ଧି ପାଉଛି । ଏବେ ସେଠାରେ ଆଗଭଳି ଥଣ୍ଡା ହେଉ ନାହିଁ । ଫଳରେ ଝିଅମାନେ ଅପେକ୍ଷାକୃତ ଶୀଘ୍ର ରଜସ୍ୱଳା ହେଉଛନ୍ତି । ଏଣୁ ସନ୍ତାନ ଉତ୍ପାଦନର କ୍ଷମତା ମଧ୍ୟ ଆଗ ଅପେକ୍ଷା ଏବେ ଅଳ୍ପ ବୟସରେ ପରିପୁଷ୍ଟ ହେଉଛି ।

ଆହାର, ବିହାର ଓ ବାତାବରଣର ଉତ୍ତାପ ବୃଦ୍ଧି ପାଇଲେ ପୁରୁଷ ଓ ନାରୀମାନଙ୍କଠାରେ କାମ ପ୍ରବୃତ୍ତି ତୀବ୍ର ହେବାର ତଥ୍ୟ ଏବେ ପୁରୁଣା ହୋଇଗଲାଣି । ବର୍ତ୍ତମାନ ଶରୀରଶାସ୍ତ୍ରୀମାନେ ଏକ ନୂତନ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ଉତ୍ତେଜନାତ୍ମକ ଚିନ୍ତନ ଦ୍ୱାରା ମସ୍ତିଷ୍କରେ ଯେଉଁ ବିଦ୍ୟୁତ୍ ପ୍ରବାହ ଖେଳିଯାଏ, ତାହା ହିଁ ମନୁଷ୍ୟକୁ ବଳପୂର୍ବକ ଯୌନ ଲିପ୍ସାରେ ପ୍ରବୃତ୍ତ କରିଥାଏ । ଏହି ବିଦ୍ୟୁତ୍ ଧାରାକୁ ଦୁର୍ବଳ କରାଯାଇପାରେ ଓ ସବଳ କରାଯାଇପାରେ । ତଦନୁସାରେ ନିଜସ୍ୱ ପ୍ରୟାସରେ ସଂଯମ ନିମନ୍ତେ ପୃଷ୍ଠଭୂମି ପ୍ରସ୍ତୁତ କରାଯାଇପାରେ । ଏଥିପାଇଁ କେବଳ ଚିନ୍ତାର ଉପାୟ ବଦଳାଇବା ଯଥେଷ୍ଟ ନୁହେଁ, ବରଂ ହରମୋନ୍‌ର ପ୍ରବାହକୁ ବାଧା ଦେଉଥିବା ଅନ୍ତଃଚେତନା ବଳିଷ୍ଠ ହେବା ଆବଶ୍ୟକ । ଯୋଗାଭ୍ୟାସ ପରି ଉପାୟ ଦ୍ୱାରା ଏହା ସମ୍ଭବ ହୋଇଥାଏ ।

ମନୋବୈଜ୍ଞାନିକ କ୍ରୁକ୍‌ଶେଙ୍କ ବକ୍ତବ୍ୟ ହେଉଛି– କାମ ତୃପ୍ତିରେ କେବଳ ଇନ୍ଦ୍ରିୟର ପରିତୃପ୍ତି ନୁହେଁ, ବରଂ ଆବେଶର ତୃପ୍ତି ମଧ୍ୟ ଆବଶ୍ୟକ ହୁଏ । ଚେତନାରେ ଭାବୁକତାପୂର୍ଣ୍ଣ ଉତ୍ସାହ ଆସିଲେ ଏହା ସମ୍ଭବ ହୋଇପାରେ । ଶୃଙ୍ଗାର ରସର ବାତାବରଣ ସୃଷ୍ଟି କରାଗଲେ ଏପରି ଉତ୍ସାହ ଦେଖାଦେଇଥାଏ, କିନ୍ତୁ ହର୍‌ମୋନ୍ ସ୍ରାବର ଜନ୍ମଦାତା ଅନ୍ତଃଚେତନା ଉପରେ ଏହା ମୁଖ୍ୟତଃ ନିର୍ଭର କରେ ।

ପୁତ୍ର ବା କନ୍ୟା ଜନ୍ମ ହେବାରେ ମଧ୍ୟ ଏହା ଆବେଶ ବିଦ୍ୟୁତ୍‌ର ହାତ ଥାଏ । ସାଧାରଣତଃ ଶୁକ୍ରକୀଟ ଓ ରଜ ଅଣ୍ଡର ସ୍ଥିତିକୁ ଗର୍ଭଧାରଣ ଉଦ୍ଦେଶ୍ୟରେ ଦାୟୀ କରାଯାଏ । ପୁତ୍ର ବା କନ୍ୟା ଜନ୍ମ ପାଇଁ ଅଲଗା ଅଲଗା ଶୁକ୍ରାଣୁର ହାତ ଥାଏ ବୋଲି କୁହାଯାଇଥାଏ ।

ଶରୀର ଶାସ୍ତ୍ରର ଛାତ୍ରମାନେ ଜାଣନ୍ତି ଯେ ପୁରୁଷର ଶୁକ୍ରାଣୁରେ ପୁରୁଷ ଓ ସ୍ତ୍ରୀ ଜାତିର ଜୀବାଣୁ ଥାଆନ୍ତି । ଅଥଚ ନାରୀର ରଜରେ କେବଳ ଏକ ଜାତିର– ନାରୀ ଜାତିର ଜୀବାଣୁ ଥାଆନ୍ତି । ଉଭୟର ମିଳନ ଫଳରେ ଗର୍ଭସ୍ଥାପନା ହୋଇଥାଏ । ଏହି ମିଳନ ଫଳରେ ଯଦି ନର ଶୁକ୍ରାଣୁର ନାରୀ ବୀଜ ସଫଳ ହୁଏ, ତେବେ କନ୍ୟା ଏବଂ ନର ବୀଜ ସଫଳ ହେଲେ ପୁତ୍ର ଉତ୍ପନ୍ନ ହୋଇଥାଏ । ମୋଟାମୋଟି ଭାବରେ ସବୁ ପ୍ରାଣୀର କ୍ଷେତ୍ରରେ ଏହି ସିଦ୍ଧାନ୍ତ ପ୍ରଯୁଜ୍ୟ । ତେଣୁ କନ୍ୟା ବା ପୁତ୍ର ଉତ୍ପତ୍ତି ପାଇଁ ନର ଶରୀରକୁ ହିଁ ଦାୟୀ କରାଯାଏ । ଏ କ୍ଷେତ୍ରରେ ନାରୀ ସର୍ବଥା ନିରପେକ୍ଷ ଓ ନିର୍ଦ୍ଦୋଷ ଅଟେ ।

ଶୁକ୍ରରେ ଥିବା ଉଭୟ ଜାତିର ଜୀବାଣୁ ଭିତରୁ ଯଦି ଗୋଟିଏ ବର୍ଗକୁ ନିଷ୍କ୍ରିୟ କରାଯାଇପାରେ, ତେବେ ଅଭୀଷ୍ଟ ଲିଙ୍ଗର ସନ୍ତାନ ଉତ୍ପାଦନ ସମ୍ଭବ ହୋଇପାରେ । ଏହି ସିଦ୍ଧାନ୍ତ ପ୍ରତି ଦୃଷ୍ଟି ଦେଇ, ଗୋଟିଏ ପକ୍ଷର ଜୀବାଣୁକୁ ମୂର୍ଚ୍ଛିତ କରିବା ପାଇଁ ଉପଯୁକ୍ତ ଔଷଧର ଗବେଷଣା ଅନେକ ଦିନଧରି ଚାଲିଲା । ଏ ପ୍ରୟୋଗରେ ସଫଳତା ନ ମିଳିବାରୁ ସେ ଗବେଷଣା ସ୍ଥଗିତ ହୋଇଗଲା । ରତିକ୍ରିୟା ସମୟରେ ଗୋଟିଏ ବର୍ଗର ଜୀବାଣୁକୁ ମୂର୍ଚ୍ଛିତ କରିପାରିବା ଭଳି ଔଷଧ ଜର୍ମାନ ବୈଜ୍ଞାନିକମାନେ ପ୍ରସ୍ତୁତ କରିଥିଲେ । କିନ୍ତୁ ଏ ପ୍ରୟୋଗ ମଧ୍ୟ ଅସଫଳ ହୋଇଗଲା ।

ରୁଷ୍ ଦେଶର ମହିଳା ବୈଜ୍ଞାନିକ ବି.ଏନ୍.ଶ୍ରୋଡର ନିଜ ସହଯୋଗୀ କୋଲ୍ଚ୍ଚୋଭଙ୍କ ସହିତ ଗବେଷଣା କରି ଜାଣିପାରିଲେ ଯେ ବୀର୍ଯ୍ୟ ବୀଜ ଋଣ ଓ ଧନ ଧାରା ଦ୍ୱାରା ପ୍ରଭାବିତ ହୋଇଥାଏ । ଯଦି ଶରୀରର ଗୋଟିଏ ବୀଜକୁ ବିଦ୍ୟୁତ୍ ଛୁଆଁଯାଏ, ତେବେ ଗୋଟିଏ ବର୍ଗର ଶୁକ୍ର ବୀଜ ବିଶେଷ ରୂପେ ଉତ୍ତେଜିତ ହେବେ ଓ ଅନ୍ୟ ବର୍ଗ ମନ୍ଦ ଅବସ୍ଥାରେ ପଡ଼ିରହିବେ । ଧନ ବିଦ୍ୟୁତ୍‌ଧାରା ନର ବୀଜକୁ ଓ ଋଣ ବିଦ୍ୟୁତ୍‌ଧାରା ନାରୀ ବୀଜକୁ ଉତ୍ତେଜିତ କରିଥାଏ । ସେମାନେ 'ଇଲେକ୍ଟ୍ରୋ ଫୋରେସିସ୍' ସାହାଯ୍ୟରେ ଜୀବାଣୁର ପୃଥକୀକରଣ କରି ଠେକୁଆଠାରେ ସନ୍ତାନୋତ୍ପାଦନ କରାଇଥିଲେ । ଏହାର ପରିଣାମ ଆଶାଜନକ

ହେଲା । ଉପରୋକ୍ତ ପ୍ରତିପାଦନରୁ ପ୍ରମାଣିତ ହୁଏ ଯେ ଶୁକ୍ରାଣୁର କେଉଁ ବର୍ଗ ପ୍ରବଳ ହେବେ ଏବଂ କେଉଁ ଲିଙ୍ଗର ସନ୍ତାନ ଉତ୍ପାଦନ କରିପାରିବେ । ଏହି ପ୍ରକ୍ରିୟା ସେହି କୀଟାଣୁ ଗଠନରେ ଥିବା ରାସାୟନିକ ବିଶେଷତ୍ୱ ଉପରେ ନିର୍ଭର କରେ ନାହିଁ, ବରଂ କୌଣସି ବିଶେଷ ବର୍ଗର କୀଟାଣୁକୁ ଉତ୍ତେଜିତ କରୁଥିବା ବିଦ୍ୟୁତ୍ ପ୍ରବାହ ଉପରେ ନିର୍ଭର କରେ । ଔଷଧ ପ୍ରୟୋଗ ଦ୍ୱାରା ନପୁଂସକକୁ ପୁରୁଷତ୍ୱ ସମ୍ପନ୍ନ କରାଇବା କଥା ବ୍ୟର୍ଥ ମନେ କରାଯାଏ । ଠିକ୍ ସେହିପରି ପୁତ୍ର ବା କନ୍ୟା ଉତ୍ପନ୍ନ କରାଇବାରେ ସମର୍ଥ ବୋଲି କୁହାଯାଉଥିବା ଔଷଧ ମଧ୍ୟ କାର୍ଯ୍ୟକାରୀ ହୋଇ ନ ଥାଏ । ଆଧୁନିକତମ ବିଶ୍ୱାସ ହେଉଛି– ମାନବ ଶରୀରର ଅନ୍ତଃକ୍ଷେତ୍ରରେ ପ୍ରବାହିତ ହେଉଥିବା ବିଦ୍ୟୁତ୍‌ଶକ୍ତିର ସ୍ତର ହିଁ ନରର ଶୁକ୍ର ଓ ନାରୀର ରଜକୁ କେବଳ ଗର୍ଭାଧାନ ଅବସ୍ଥାକୁ ଆଣେ ନାହିଁ, ବରଂ ପୁତ୍ର ବା କନ୍ୟାର ଜନ୍ମ ତା' ଉପରେ ନିର୍ଭର କରେ ।

କଲମ୍ବିଆ ବିଶ୍ୱବିଦ୍ୟାଳୟର ପ୍ରସୂତିଶାସ୍ତ୍ରର ଅଧ୍ୟାପକ ଡାଃ ଶେଟଲ୍ସ ଏକ ହଜାର ପୁରୁଷଙ୍କଠାରୁ ଶୁକ୍ରାଣୁ ସଂଗ୍ରହ କରି ତା ଉପରେ ନାନାପ୍ରକାର ଗବେଷଣା କରିଥିଲେ । ଅନୁସନ୍ଧାନ ପରେ ସେ ଏକ ସିଦ୍ଧାନ୍ତରେ ଉପନୀତ ହେଲେ ଯେ କ୍ରୋମୋଜୋମ୍‌କୁ ବିଦ୍ୟୁତ୍ ଧାରା ଦ୍ୱାର ପ୍ରଭାବିତ କରାଯାଇପାରେ ଏବଂ ତା ଫଳରେ ଇଚ୍ଛିତ ଲିଙ୍ଗର ସନ୍ତାନ ଉତ୍ପାଦନ କରାଯାଇପାରେ ।

ଫିଲାଡେଲଫିଆ ମେଡ଼ିକାଲ ସେଣ୍ଟର ଏକ ନିଷ୍କର୍ଷରେ ଉପନୀତ ହେଲେ । ତଦନୁସାରେ କାମୋତ୍ତେଜନାର ତୀବ୍ର ବା ମନ୍ଦ ଅବସ୍ଥା ଉପରେ ଅଧିକ ମାତ୍ରାରେ ଏବଂ ଅଧିକ ସମର୍ଥ ଜୀବାଣୁର ଉତ୍ପତ୍ତି ନିର୍ଭର କରେ । ଅନ୍ୟମନସ୍କ ମାନସିକ ଅବସ୍ଥାରେ ହେଉଥିବା ସଂଯୋଗରୁ ଉତ୍ପାଦିତ ଜୀବାଣୁ ନିଷ୍କ୍ରିୟ ଓ ନିସ୍ତେଜ ହେବାର ଦେଖାଯା'ନ୍ତି । ଏପରି ନିରାଶ ଓ ନିସ୍ତେଜ ଗର୍ଭାଧାନ ଦ୍ୱାରା ମନସ୍ୱୀ ଓ ପ୍ରତିଭାଶାଳୀ ସନ୍ତାନ ଉତ୍ପତ୍ତି ହେବା ସମ୍ଭବ ନୁହେଁ ।

ଅଧିକ ସଂଖ୍ୟକ ସନ୍ତାନ ଉତ୍ପାଦନ ଶରୀରର ରାସାୟନିକ ଅବସ୍ଥା ଉପରେ ନିର୍ଭର କରେ ନାହିଁ । ତାହା ହର୍‌ମୋନ୍‌ର ଉତ୍ତେଜନା ସହିତ ସଂପୃକ୍ତ । ରାସାୟନିକ

ଦୃଷ୍ଟିରୁ ଯେଉଁ ଅବସ୍ଥାର ଗୋଟିଏ ଶରୀର ବନ୍ଧ୍ୟାତ୍ୱଗ୍ରସ୍ତ ହେବ, ସେହି ଅବସ୍ଥାର ଅନ୍ୟ ଏକ ଶରୀର ବହୁ ପ୍ରଜନନ କରିପାରେ । ଏପରି ଶରୀରକୁ ବିଶ୍ଳେଷଣ କରିବା ପରେ ଜଣାଗଲା ଯେ ଶରୀର ଅଭ୍ୟନ୍ତରସ୍ଥ ବିଦ୍ୟୁତ୍ ପ୍ରବାହକୁ ପ୍ରଜନନ କ୍ଷମତାର ପାର୍ଥକ୍ୟ ପାଇଁ ଦାୟୀ କରାଯାଇପାରେ ।

ରୁଷ୍ ଦେଶର ଜଣେ ମହିଳା ୨୭ ଥର ଗର୍ଭବତୀ ହୋଇ ୨୩ଟି ସନ୍ତାନକୁ ଜନ୍ମ ଦେଇଥିଲେ । ଏହି ମହିଳା ସେତେବେଳେ ଖୁବ୍ ବିଖ୍ୟାତ ହୋଇଥିଲେ । ସମ୍ରାଟ ଦ୍ୱିତୀୟ ଜାର୍ ତାଙ୍କୁ ସମ୍ମାନିତ କରିଥିଲେ ।

ଫ୍ରାନ୍ସର ଜଣେ ଗ୍ରାମ୍ୟ ମହିଳା ୨୧ଟି ସନ୍ତାନଙ୍କର ଜନନୀ ହୋଇ ତତ୍କାଳୀନ ସର୍ବାଗ୍ରୀଣ ଜନନୀର ଖ୍ୟାତି ଲାଭ କରିଥିଲେ । ଇଣ୍ଡୋନେସିଆ ଦେଶର ଜଣେ ମହିଳା ବିଗତ ୨୮ ବର୍ଷ ମଧ୍ୟରେ ପ୍ରତିବର୍ଷ ଗୋଟିଏ କରି ସନ୍ତାନ ପ୍ରସବ କରିଆସୁଛନ୍ତି । ମଣ୍ଟିମେଲେଟୀ (ଇଟାଲୀ)ର ଜଣେ ମହିଳା ଶ୍ରୀମତୀ ରୋଜା ବର୍ତ୍ତମାନ ପର୍ଯ୍ୟନ୍ତ ୨୬ଟି ସନ୍ତାନ ଜନ୍ମ କରି ସାରିଲେଣି ।

କେବଳ କନ୍ୟା ପ୍ରସବ କରିଥିବା ମହିଳାମାନଙ୍କ ମଧ୍ୟରେ ପ୍ରଥମ ହେଉଛନ୍ତି ଇଣ୍ଡିଆନା ପଲିସ୍‌ର ଶ୍ରୀମତୀ ସିସିଲ । ସେ କ୍ରମାଗତ ଭାବରେ ୧୪ଟି କନ୍ୟାକୁ ଜନ୍ମ ଦେଇଥିଲେ । ତାଙ୍କ ପରେ ଦ୍ୱିତୀୟ ସ୍ଥାନ ଅଧିକାର କରନ୍ତି ଶ୍ରୀମତୀ ଲାଇଡ୍ ବ୍ରୁକ୍ସ । ତାଙ୍କର ୧୩ଟି କନ୍ୟା ସନ୍ତାନ । ଏ ସମୟ ଭିତରେ ସେ ଗୋଟିଏ ହେଲେ ପୁତ୍ର ସନ୍ତାନକୁ ଜନ୍ମ ଦେଇ ନାହାନ୍ତି ।

ବୟସ କମ୍ ହେଉ ବା ଅଧିକ ହେଉ, ପ୍ରଜନନ ଯନ୍ତ୍ର ସନ୍ତାନ ଉତ୍ପାଦନ କରିବାରେ ସକ୍ଷମ ହୋଇ ରହିଥାଏ ।

ଗୁଆରାଗୁଏଟ୍ (ବ୍ରାଜିଲ୍)ରେ ୨୩ଟି ସନ୍ତାନର ପିତା ଜୋସେପାର ଫରିଓ ଡି.ଏରାଓ ୧୦୯ ବର୍ଷ ବୟସରେ ଜଣେ ୪୮ ବର୍ଷ ବୟସ୍କା ମହିଳାଙ୍କ ସହିତ ଚତୁର୍ଥ ବିବାହ କରିଥିଲେ । ପ୍ରଶ୍ନ କରୁଥିବା ଲୋକମାନଙ୍କୁ ସେ ଉତ୍ତର ଦେଇଥିଲେ ଯେ ଯଦି ସେ ଆଉ କୌଣସି ସନ୍ତାନର ପିତା ହୁଅନ୍ତି, ତେବେ ସେ ତାହାକୁ ସ୍ୱାଭାବିକ ବୋଲି ମନେ କରିବେ । ସେ ମହିଳାଙ୍କର ଏହା ପ୍ରଥମ

ବିବାହ । ସେ ଅନେକ ଦିନରୁ ତାଙ୍କର ପ୍ରେମିକା ଥିଲେ । ଲୋକମାନେ ଏହି ବୃଦ୍ଧଙ୍କ ସହ ତାଙ୍କର ବିବାହକୁ ପରିହାସ କଲେ । କିନ୍ତୁ ସେ ମହିଳା କହିଲେ, ''ମୋ ପତି ଶାରୀରିକ ଦୃଷ୍ଟିରୁ ପୂର୍ଣ୍ଣ ସମର୍ଥ ଏବଂ ତାଙ୍କ ପ୍ରତି ମୁଁ ସନ୍ତୁଷ୍ଟ ।''

ଦକ୍ଷିଣ ପେରୁର ଅରିକୁଇଆ ଡାକ୍ତରଖାନାରେ ଜଣେ ୧୧ ବର୍ଷ ବୟସ୍କା ବାଳିକା ୧.୮ କିଲୋଗ୍ରାମ ଓଜନର ଏକ ସନ୍ତାନ ପ୍ରସବ କଲା । ମା' ଓ ପିଲା ଉଭୟ ସୁସ୍ଥ ଥିଲେ ।

ଏହା ପୂର୍ବରୁ ଅଳ୍ପବୟସ୍କା କନ୍ୟା ଦ୍ୱାରା ପ୍ରଜନନର ପ୍ରଥମ ବିବରଣ ହେଉଛି– ୧୯୩୮ ମସିହାରେ ଏକ ସାତବର୍ଷ ବୟସର ବାଳିକା ଲିଣ୍ଡା ମେଡ଼ିନା କେଷ୍ଟ୍ରୋ ବିରୀନା ଡାକ୍ତରଖାନାରେ ଏକ ପୁତ୍ର ସନ୍ତାନକୁ ଜନ୍ମ ଦେଇଥିଲା ।

ଏସବୁ ପ୍ରମାଣରୁ ଜଣାପଡ଼େ ଯେ ଶାରୀରିକ ଅବସ୍ଥା ଉପରେ ପ୍ରଜନନ ନିର୍ଭର କରେ ନାହିଁ, ବରଂ ଏକ ପ୍ରକାର ଚେତନା ସହିତ ତାହାର ସିଧାସଳଖ ସଂପର୍କ ରହିଛି । ଏହି ଚେତନା କାୟାରେ ଥିବା ରାସାୟନିକ ପଦାର୍ଥ ଅପେକ୍ଷା ଉଚ୍ଚ ସ୍ତରର ।

ଏଇ ତଥ୍ୟ ଉପରେ ବିଚାର କରି କାମ ପ୍ରବୃତ୍ତିକୁ ନିୟନ୍ତ୍ରିତ, ପରିଷ୍କୃତ, ପରିପୁଷ୍ଟ, ପ୍ରବଳ କିମ୍ବା ଶିଥିଳ କରି ନୁହେଁ, ବରଂ ଅଭୀଷ୍ଟ ସନ୍ତାନ ଉତ୍ପାଦନ ପାଇଁ ବିଶିଷ୍ଟ ଚେତନା ସହିତ ସମ୍ପର୍କ ସ୍ଥାପନ କରିବାକୁ ହେବ । ଏହି ଚେତନା ଅସ୍ଥି, ମାଂସ ସହିତ ସଂପୃକ୍ତ ନୁହେଁ, ବରଂ ଅନ୍ତଃଚେତନା ସହିତ ସଂପୃକ୍ତ । ଚେତନାର ଏହି ସ୍ତର କୁଣ୍ଡଳିନୀ ଜାଗରଣ ପରି ସାଧନା ପଦ୍ଧତି ସହିତ ସଂପୃକ୍ତ । ବ୍ରହ୍ମଚର୍ଯ୍ୟର ପରିପୂର୍ଣ୍ଣ ପାଳନ ଓ ଓଜସ୍ ଶକ୍ତିର ପ୍ରଖର ବ୍ୟକ୍ତିତ୍ୱ ରୂପେ ପରିବର୍ତ୍ତନ ମଧ୍ୟ ଏହି ସ୍ତରର ସାଧନା ଦ୍ୱାରା ସମ୍ଭବ ହୋଇପାରେ ।

## କାମବୀଜକୁ ପରିଷ୍କାର କରିବା

କାମବୀଜରୁ ଶରୀରର ଉତ୍ପତ୍ତି । ଫ୍ରୟେଡ୍‌ଙ୍କ ମତ ଅନୁସାରେ ଏହା ପିଲାଦିନେ ସ୍ତନ୍ୟପାନଠାରୁ ଆରମ୍ଭ କରି ସାଥୀମାନଙ୍କ ସହିତ ଖେଳାଖେଳି

ପର୍ଯ୍ୟନ୍ତ ନାନାରୂପେ ବିକଶିତ ହୋଇଥାଏ । କିଶୋର ଅବସ୍ଥାରେ ଏହା ବୀଜ ରୂପେ ଆତ୍ମପ୍ରକାଶ କରେ । ଜ୍ଞାନକୁ ପଛରେ ପକାଇ ଉତ୍ସାହର ଯେଉଁ ତୋଫାନ ଆସେ, ସେଥିରେ ମନୋବୈଜ୍ଞାନିକଗଣ କାମତତ୍ତ୍ୱର ପ୍ରାବଲ୍ୟ ଦେଖିପାରନ୍ତି । ତାହାର ଅଭିବୃଦ୍ଧି ପ୍ରକଟ ହୁଏ ପୁଅ ପିଲାମାନଙ୍କର ନୂତନ ସ୍ଥାନରେ ନୂତନ କେଶର ଉତ୍ପତ୍ତି ତଥା ଜନନେନ୍ଦ୍ରିୟର ପ୍ରୌଢ଼ତା ରୂପରେ । ଝିଅ ପିଲାଙ୍କ କ୍ଷେତ୍ରରେ ରକ୍ତୋଦର୍ଶନ ଏବଂ ବକ୍ଷସ୍ଥଳ ଉଚ୍ଚ ହେବା ଏହାର ପ୍ରମାଣ । କଳ୍ପନା କ୍ଷେତ୍ରରେ ବିପରୀତ ଲିଙ୍ଗ ପ୍ରତି ଆକର୍ଷଣ କଳ୍ପନାର ତୋଫାନ ଦେଖାଦେଇଥାଏ । ପରେ ଏହାର ପରିଣତି ହୁଏ ପ୍ରଣୟ । ଦାମ୍ପତ୍ୟସୂତ୍ର ଯୋଡ଼ି ହୁଏ, ଆଦାନ ପ୍ରଦାନର ଭାବପୂର୍ଣ୍ଣ ରସସ୍ୱାଦନ ମିଳେ ଏବଂ ସନ୍ତାନ ଉତ୍ପାଦନର କ୍ରମ ଆରମ୍ଭ ହୋଇଯାଏ । ଜଣେ ନୂତନ ଗୃହସ୍ଥର ନୂତନ ପରିବାରର ଶ୍ରୀଗଣେଶ ହୁଏ । ପରିବାରର ବିବିଧ ବ୍ୟବସ୍ଥା କରିବା ଲାଗି ପତିପତ୍ନୀ ପ୍ରାୟ ପୂରା ଶକ୍ତି ଲଗାଇ ଦିଅନ୍ତି । ଏହା କାମ ବୀଜରୁ ଉତ୍ପନ୍ନ ବଟବୃକ୍ଷ ଅଟେ । ଭଲ ବା ମନ୍ଦ ବ୍ୟସ୍ତ କ୍ରିୟାକଳାପ ଦ୍ୱାରା ଏହା ବିସ୍ତାରଲାଭ କରେ । ଏହି ବେଦୀରେ ଜୀବନ ସମ୍ପଦର ଉତ୍ସର୍ଗ ହେବାର ଦେଖାଯାଇଥାଏ । କେବେକେବେ ଉଚ୍ଛୃଙ୍ଖଳ ଯୌନାଚାରର କଳ୍ପନା ବା କ୍ରିୟା ନିଜସ୍ୱ କୋଳାହଳ ଉତ୍ପନ୍ନ କରିଥାନ୍ତି । ଏହା ଉପରେ ସାମାଜିକ ନିୟନ୍ତ୍ରଣ ନ ରହିଲେ ସେହି ସ୍ୱେଚ୍ଛାଚାରର ପ୍ରତିକ୍ରିୟା ଫଳରେ ସମାଜ, ପରିବାର, ସଭ୍ୟତା ଓ ମାନସିକ ପ୍ରଗତିର ଅନ୍ତ ହୋଇପାରେ । ଅପରାଧର ଘଟଣା କ୍ରମରେ କାମ ବିଗ୍ରହ ଏବଂ ତାହାର ବିକୃତ ପ୍ରତିକ୍ରିୟାର ପ୍ରଭାବ ଯେତିକି ଥାଏ, ସବୁ ଅନାଚାରର ପ୍ରଭାବ ମଧ୍ୟ ସେତିକି ନୁହେଁ । ଏହି ପ୍ରବଳ ପ୍ରେରଣା ଯୋଗୁଁ ନୀତି ଓ ମର୍ଯ୍ୟାଦାର ଉଲ୍ଲଘନ ଏବେ ନଜରକୁ ଆସୁଛି ।

ଏପରି ପ୍ରେରଣାପ୍ରଦ ତତ୍ତ୍ୱକୁ ତୁଚ୍ଛ ମନେ କରିବା ଅନୁଚିତ । ଏହାର ସାମର୍ଥ୍ୟ ଅସୀମ । ଗୋଟିଏ ଶରୀରରୁ ଅନ୍ୟ ଏକ ଶରୀରର ଉତ୍ପତ୍ତି ଏ ସୃଷ୍ଟିର ଏକ ଅଦ୍‌ଭୁତ, ଆଶ୍ଚର୍ଯ୍ୟଜନକ ପ୍ରକ୍ରିୟା । ସ୍ରଷ୍ଟାଙ୍କର ଘୋଷଣା ‘‘ଏକୋଽହଂ ବହୁଷ୍ୟାମି’’ ମନୁଷ୍ୟର ଏହି ସାମର୍ଥ୍ୟରେ ପ୍ରତିଭାସିତ; କିନ୍ତୁ ମନୁଷ୍ୟ ଯଦି

ସାରାଜୀବନ କୃମିକୀଟ ସମାନ କେବଳ ସନ୍ତାନ ଉତ୍ପାଦନରେ ନଷ୍ଟ କରିଦିଏ, ତେବେ ତାହା ଏହି ସାମର୍ଥ୍ୟର ଦୁରୁପଯୋଗ ବୋଲି କୁହାଯିବ ।

ଗୀତାର କର୍ମଯୋଗରେ ନିଷ୍କାମ ହେବା ପାଇଁ ଉପଦେଶ ଦିଆଯାଇଛି । ଏହାର ମୋଟାମୋଟି ଅର୍ଥ ହେଉଛି– କାମନା ତ୍ୟାଗପୂର୍ବକ କର୍ତ୍ତବ୍ୟପରାୟଣ ହେବା । କିନ୍ତୁ ଗଭୀର ଭାବରେ ବିଚାର କଲେ, ସେଥିରେ କାମରହିତ ହେବା, ଉଚ୍ଚସ୍ତରୀୟ ଆତ୍ମିକ ପ୍ରଗତି କରିବା ଏବଂ ଆତ୍ମକଲ୍ୟାଣ ତଥା ଈଶ୍ୱର ଦର୍ଶନର ଲାଭ ମିଳିବାର ତଥ୍ୟ ସମାହିତ ଥିବାର ଜଣାଯାଏ ।

ସବୁ ସମ୍ପ୍ରଦାୟ ସମାନ ଭାବରେ ସନାତନ ଧର୍ମ ରୂପେ ବ୍ରହ୍ମଚର୍ଯ୍ୟର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି । ସେଥିରେ ନାନାବିଧ ଉପକାର, ସତ୍ ପରିଣାମ ଥିବା ବିଷୟ କୁହାଯାଇଛି । ବ୍ରହ୍ମଚର୍ଯ୍ୟର ମୋଟାମୋଟି ଅର୍ଥ କୁହାଯାଇଛି– ସଂଯୋଗଠାରୁ ଦୂରରେ ରହିବା । ଏହା ଶାରୀରିକ ମର୍ଯ୍ୟାଦା; କିନ୍ତୁ ମାନସିକ କ୍ଷେତ୍ରରେ ବ୍ରହ୍ମଚର୍ଯ୍ୟ ପାଳନ କଲେ ହିଁ ଏହାର ଉପକାର ମିଳେ । ସତକଥା ହେଉଛି– ଏ ପ୍ରସଙ୍ଗ ଶରୀର ସହିତ ଅଳ୍ପ ଓ ମନ ସହିତ ଅଧିକ ସଂପୃକ୍ତ । ମନ ଉପରେ କାମୁକତାର ପ୍ରଭାବ ରହିଥିଲେ, ଶରୀର ସଂଯମ କେବଳ ନିରର୍ଥକ ନୁହେଁ ବରଂ କ୍ଷତିକାରକ ହୋଇଥାଏ । ଶରୀରଶାସ୍ତ୍ରୀମାନେ କାମ ନିରୋଧକୁ ହାନିକାରକ ବୋଲି କହିଛନ୍ତି । ମାନସିକ କ୍ଷେତ୍ରରେ ଅସଂଯତ ହୋଇ ଜବରଦସ୍ତ ଶରୀରକୁ ନିୟନ୍ତ୍ରଣ କଲେ ଏହା ସତ୍ୟ ରୂପେ ପ୍ରମାଣିତ ହୁଏ । ଏପରି ହେଲେ ସ୍ୱପ୍ନଦୋଷ ହେବ ଅଥବା ଗୋପନ କୁକୃତ୍ୟ ଆରମ୍ଭ ହୋଇଯିବ । ପ୍ରତ୍ୟକ୍ଷ ମୈଥୁନ ତୁଳନାରେ ଏହା ଦ୍ୱାରା ହେଉଥିବା କ୍ଷତିର ମାତ୍ରା କମ୍ ନୁହେଁ, ବରଂ ଅଧିକ । ବିପରୀତ ପକ୍ଷରେ ଯଦି ଧର୍ମପତ୍ନୀ ସହିତ ମିତ୍ର, ସହଚର ବା ସହୋଦର ଭାବନା ନେଇ ବାସ କରାଯାଏ ଓ ଆବଶ୍ୟକତା ଅନୁସାରେ ମର୍ଯ୍ୟାଦା ଭିତରେ କାମ ସେବନ କରାଯାଏ, ତେବେ ତାହାର କୌଣସି ବିପରୀତ ପ୍ରତିକ୍ରିୟା ହେବ ନାହିଁ । ପ୍ରକୃତରେ ଏହା ଦ୍ୱାରା କୁକଳ୍ପନା ଓ କୁଚେଷ୍ଟାକୁ ନିରସ୍ତ କରିବାରେ ସାହାଯ୍ୟ ମିଳିବ । ଦେବତା, ଋଷି ଓ ମହାମାନବଗଣ ଯଦି ବିବାହିତ ଜୀବନ

ଯାପନ କରିପାରନ୍ତି, ତେବେ ତାହା କୌଣସି ଗର୍ହିତ କର୍ମ ହୋଇ ନ ପାରେ । ଏପରି ହୋଇଥିଲେ ସେମାନେ ଏ ପଥରେ ପଥିକ ହୋଇଥାନ୍ତେ କି ?

ଏଠାରେ ବିବାହିତ ବା ଅବିବାହିତ ସପକ୍ଷରେ କିମ୍ବା ବିପକ୍ଷରେ କିଛି କୁହାଯାଉ ନାହିଁ । ବ୍ୟକ୍ତିବିଶେଷର ମାନସିକ ଆସ୍ଥା, ପରିସ୍ଥିତି ଓ କାର୍ଯ୍ୟପଦ୍ଧତି ଦୃଷ୍ଟିରୁ ଉଭୟ ମାର୍ଗ ଉପଯୋଗୀ ଅଟେ । ଯେଉଁ ବ୍ୟକ୍ତିମାନେ ଉଚ୍ଚତର ଆଦର୍ଶରେ ନିରତ ରହିବେ, ସେମାନେ ନିଜର ଶକ୍ତି ଅପବ୍ୟୟ ନକରି ଲକ୍ଷ୍ୟ ପାଇଁ ଅଧିକ କିଛି କରିବା ସେତେବେଳେ ହିଁ ସମ୍ଭବ ହୋଇପାରେ, ଯେତେବେଳେ ଗୃହସ୍ଥର ଭାର ବହନ କରିବା କାମରୁ ସେମାନଙ୍କୁ ଅବସର ମିଳିବ । ପ୍ରାଚୀନ କାଳରେ ସାଧୁପରମ୍ପରା ଏହି ପନ୍ଥା ଅନୁସରଣ କରୁଥିଲେ । ଅବିବାହିତ ଅବସ୍ଥାରେ ରହି ସେମାନେ ପରିବ୍ରାଜକ କାର୍ଯ୍ୟ ପଦ୍ଧତିରେ, ନ୍ୟୂନତମ ନିର୍ବାହରେ, ଚିନ୍ତାମୁକ୍ତ ରହିବାରେ ସୁବିଧା ପାଉଥିଲେ । ବିପରୀତ ପକ୍ଷରେ, ଯେଉଁମାନଙ୍କୁ ଆଶ୍ରମ ପରିଚାଳନା କରିବାକୁ ହେଉଥିଲା, ସେହି ବ୍ରାହ୍ମଣମାନେ ଗୃହବ୍ୟବସ୍ଥା ଉଦ୍ଦେଶ୍ୟରେ ପତ୍ନୀଙ୍କଠାରୁ ସହଯୋଗ ଲାଭ କରିବାର ସୁବିଧା ଦେଖୁଥିଲେ । ଯାହାହେଉ, ଏଠାରେ ସେ ପ୍ରସଙ୍ଗ ଉଠୁ ନାହିଁ । କାମ ଦହନ ପରେ କାମପତ୍ନୀ ରତି ବିଳାପ କଲେ । ଭଗବାନ ଆଶୁତୋଷ ବିଧବାର ଦୁଃଖ ସହି ପାରିଲେ ନାହିଁ । ସେ ଦୟା ବିଗଳିତ ହୋଇ ବର ଦେଲେ ଯେ, ଭସ୍ମସାତ କାମଦେବ ପୁନରାୟ ଶରୀର ଧାରଣ କରିପାରିବେ ନାହିଁ, କିନ୍ତୁ ସୂକ୍ଷ୍ମ ରୂପ ଧରି ସଜୀବ ହୋଇଯିବେ, ଉଚ୍ଚ ଆତ୍ମା ଉପରେ ନିଜର ଅସ୍ତ୍ର ପ୍ରୟୋଗ କରିବାର କାମନା ପୂରଣ କରିପାରିବେ ।

ଏହି ବରଦାନର ଅଭିପ୍ରାୟ ହେଉଛି– ପଶୁ ପ୍ରବୃତ୍ତିକୁ ଉତ୍ତେଜିତ କରୁଥିବା ଓ ଜୀବନ ସଂପଦକୁ କୁମାର୍ଗରେ ନିୟୋଜିତ କରୁଥିବା କାମୁକତାକୁ ପରିଷ୍କାର କରାଯାଇପାରେ । ତାହାକୁ ଭାବନାତ୍ମକ ଶ୍ରେଷ୍ଠ ସମ୍ପଦରେ ନିୟୋଜନ କରି ସ୍ଥୂଳ ଯୌନାଚାର ଆକର୍ଷଣରୁ ବିରତ କରାଯାଇପାରେ ।

କୁଣ୍ଡଳିନୀର ସ୍ୱରୂପ ନିର୍ଦ୍ଧାରଣରେ ଏହି ତଥ୍ୟ ଅଧିକ ସ୍ପଷ୍ଟ । ମୂଳାଧାର ଚକ୍ରକୁ କାମକେନ୍ଦ୍ର କୁହାଯାଇଥାଏ । ଏହା ଜନନେନ୍ଦ୍ରିୟର ମୂଳ ଦେଶରେ ଅବସ୍ଥିତ ।

ଏହାକୁ ଅଗ୍ନିକୁଣ୍ଡ, ଅଗ୍ନି, ସମୁଦ୍ର ତଥା ଶକ୍ତି ସମୁଦ୍ର ବୋଲି କୁହାଯାଏ । ଉତ୍ସାହ ଓ ପ୍ରେରଣା ଦେବାର କ୍ଷମତା ଏଠାରେ କେନ୍ଦ୍ରୀଭୂତ ହୋଇଥାଏ । ଏ ଅବସ୍ଥାରେ ଏହାକୁ ସର୍ପିଣୀ ସଂଜ୍ଞା ପ୍ରଦାନ କରାଯାଇଛି । ସର୍ପଦଂଶନ ଓ ସର୍ପବିଷ କେତେ ଭୟାନକ, ତାହା ସମସ୍ତଙ୍କୁ ଜଣା । ସାଧାରଣ ଅବସ୍ଥାରେ ଏହି କୁଣ୍ଡଳିନୀ ଅଧୋଗାମୀ ଓ ବହିର୍ମୁଖୀ ହୋଇ ରହିଥାଏ । ତାହାର କ୍ଷରଣ, ସ୍ରାବ, ଜନନେନ୍ଦ୍ରିୟ ମାର୍ଗରେ ନିମ୍ନ ଦେଶକୁ ଝରିଥାଏ । ଏହା ଚର୍ମଠାରୁ ସାମାନ୍ୟ ଉଚ୍ଚ ହୋଇଥାଏ । ଏ ଦୃଷ୍ଟିରୁ ପୁରୁଷ ତଥା ନାରୀ ଜନନେନ୍ଦ୍ରିୟର ସ୍ଥିତି ପ୍ରାୟ ଏକାଭଳି । ଏହାକୁ କୁଣ୍ଡଳିନୀର ଗର୍ହିତ, ମୂର୍ଚ୍ଛିତ ଓ ଅଧଃପତିତ ଅବସ୍ଥା ରୂପେ ଧରାଯାଇ ପାରେ ।

କୁଣ୍ଡଳିନୀ ଜାଗରଣ ସାଧନାରେ ସମୁଦ୍ର ମନ୍ଥନ ପରି ଚେଷ୍ଟା କରିବାକୁ ହୁଏ । ଫଳରେ ପ୍ରସୁପ୍ତି ଜାଗୃତିରେ ପରିଣତ ହୋଇଥାଏ । ତପସ୍ୟାର ଉଷ୍ମତା ପାଇ ଅନ୍ତଃପ୍ରକାଶ ବାହାରେ ଏବଂ ଉପର ଆଡ଼କୁ ଗତି କରିବା ଲାଗି ଚେଷ୍ଟା କରେ । ଉତ୍ତାପ ପାଇଲେ ବାୟୁ, ଜଳ ଇତ୍ୟାଦି ବିସ୍ତାର ଲାଭ କରିଥାନ୍ତି । ସେ ସବୁ ଊର୍ଦ୍ଧ୍ୱଗାମୀ ହୋଇଥାନ୍ତି । ଖରାଦିନେ ଗରମ ପବନ କାରଣରୁ ବକ୍ରବାତ ଦେଖାଯାଇଥାଏ । ଉତ୍ତାପ ପାଇଲେ ପାଣି ବାଷ୍ପରେ ପରିଣତ ହୋଇ ଉପରକୁ ଉଠେ । ମୂଳାଧାରରେ ଜାଗ୍ରତ ହୋଇଥିବା ବ୍ୟକ୍ତି ତେଜଃ ପ୍ରାଣଶକ୍ତି କୁଣ୍ଡଳିନୀକୁ ଊର୍ଦ୍ଧ୍ୱଗାମୀ କରାଏ । ଏହା ମେରୁଦଣ୍ଡ ପଥ ଦେଇ ସର୍ପିଣୀ ପରି ଚକ୍ରଗତି କରି ବ୍ରହ୍ମରନ୍ଧ୍ର ଆଡ଼କୁ ଯାଏ । ବିଦ୍ୟୁତ୍‌ର ଗତି ମଧ୍ୟ ଏହିପରି । ଏହି ତେଜଃ ମସ୍ତିଷ୍କରେ ପହଞ୍ଚେ ଏବଂ ସହସ୍ରାର କମଳ ସହିତ ସଂପୃକ୍ତ ହୁଏ । ସେଠାରେ ଏହା ବିଲୀନ ହୋଇଯାଏ । କମଳକୁ ସାତ୍ତ୍ୱିକତାର, କଳାର ଓ ଦିବ୍ୟ ସୌନ୍ଦର୍ଯ୍ୟର କେନ୍ଦ୍ର ରୂପେ ମନେ କରାଯାଏ । ଭଗବାନଙ୍କ ଅଙ୍ଗ, ଅବୟବର ବର୍ଣ୍ଣନାରେ କମଳର ଉପମା ପ୍ରୟୋଗ କରାଯାଇଥାଏ । ଲକ୍ଷ୍ମୀ କମଳ ଆସନରେ ବିରାଜମାନ । ହାତୀ କୁମ୍ଭୀର ଆକ୍ରମଣରୁ ରକ୍ଷା ପାଇବା ପାଇଁ ଶୁଣ୍ଢରେ କମଳ ପୁଷ୍ପ ଧରି ଭଗବାନଙ୍କ ଅଭ୍ୟର୍ଥନା କରିଥିଲା । ଲକ୍ଷ୍ମୀଙ୍କର ଅନ୍ୟ ନାମ ହେଉଛି କମଳା । ବିଷ୍ଣୁଙ୍କର ଚାରି ହାତରେ ଚାରିଗୋଟି ଉପକରଣ ରହିଛି । ଏଥିରୁ ଶଙ୍ଖ, ଚକ୍ର,

ଗଦା ପରେ ଚତୁର୍ଥ ଉପକରଣ ହେଉଛି କମଳ । ଏମିତି ପୌରାଣିକ ସଂଗତିରେ କମଳକୁ ଦିବ୍ୟତାର ପ୍ରତୀକ ରୂପେ ସ୍ୱୀକାର କରାଯାଇଥାଏ । ମସ୍ତିଷ୍କର ଏହି କ୍ଷେତ୍ରରେ, ବ୍ରହ୍ମରନ୍ଧ୍ରରେ, ସହସ୍ରାର କମଳ ଅବସ୍ଥିତ । ଏହା ଉପରେ କେବେ ବିଷ୍ଣୁ, କେବେ ଶିବ ବା କେବେ ସଦ୍‌ଗୁରୁଙ୍କ ସ୍ଥାପନା ତଥା ଧ୍ୟାନର ଉଲ୍ଲେଖ ରହିଛି । କାମୁକତାରେ ସଂଲଗ୍ନ ଅନ୍ତଃଶକ୍ତିକୁ ସେହି ପତନର ଗର୍ତ୍ତରୁ ଉଦ୍ଧାର କରି ବ୍ରହ୍ମଚେତନାରେ, ଉତ୍‌କୃଷ୍ଟ ଉଲ୍ଲାସ ପ୍ରଦାନ କରୁଥିବା ବ୍ରହ୍ମବିଦ୍ୟାରେ ନିୟୋଜନ କରିବା ଉଚିତ ବୋଲି ଏହି ପ୍ରତିପାଦନ ଇଙ୍ଗିତ ଦେଇଥାଏ ।

ଏହି ପରିବର୍ତ୍ତନକୁ ଉତ୍କର୍ଷ ଉନ୍ନୟନର କୁଣ୍ଡଳିନୀ ଜାଗରଣ କୁହାଯାଏ । ଏହା ହିଁ ବ୍ରହ୍ମଚର୍ଯ୍ୟର ତାତ୍ତ୍ୱିକ ସାଧନା । ଏଥିରେ ଅଧ୍ୟାତ୍ମ ତତ୍ତ୍ୱଜ୍ଞାନର ସମସ୍ତ ସୂତ୍ର ସମାହିତ । ଏହି ଟ୍ରାନ୍ସଫରମେସନ୍ ବା ରୂପାନ୍ତରଣର ସତ୍ ପରିଣାମ ମହାନ ଜାଗରଣ, ଦିବ୍ୟଜୀବନ ରୂପେ ଦୃଷ୍ଟିଗୋଚର ହୋଇଥାଏ । କାମବୀଜର ଏହି ସମର୍ପଣ କେତେ ଶ୍ରେୟସ୍କର ହୁଏ, ତାହ କୁଣ୍ଡଳିନୀ ମହାବିଜ୍ଞାନର ଜାଗରଣ ସାଧନା ଓ ତତ୍ତ୍ୱ ଭାବନା ଅନୁସରଣ କରି ଅନୁଭବ କରାଯାଇପାରେ ।

***

# କାମର ଉତ୍ପତ୍ତି ଓ ଉଦ୍‌ଭବ

କୁଣ୍ଡଳିନୀ ମହାଶକ୍ତିକୁ କାମକଳା କୁହାଯାଏ । କେତେକ ସ୍ଥାନରେ ଏହାର ବର୍ଣ୍ଣନା ଦେଖି ତାହା ସାଧାରଣ କାମସେବନ ବିଷୟରେ ଆଲୋଚନା ପରି ଜଣାଯାଏ । ଜନନେନ୍ଦ୍ରିୟ ମୂଳରେ କୁଣ୍ଡଳିନୀର ସ୍ଥାନ ହୋଇଥିବାରୁ ତାହାର ପରିଣତି କାମ ଶକ୍ତିକୁ ବର୍ଦ୍ଧିତ କରିବାରେ ପ୍ରଯୁଜ୍ୟ ହେବା ଭଳି ଜଣାଯାଏ ।

ଏହି ତତ୍ତ୍ୱକୁ ହୃଦୟଙ୍ଗମ କରିବା ସକାଶେ ଆମକୁ ଅଧିକ ଗଭୀର ପ୍ରଦେଶରେ ପ୍ରବେଶ କରିବାକୁ ହେବ, ଅଧିକ ସୂକ୍ଷ୍ମଦୃଷ୍ଟିରେ ଦେଖିବାକୁ ହେବ । ପୁରୁଷ ଓ ନାରୀ ମଧ୍ୟରେ ହୋଇଥିବା କାମକ୍ରୀଡ଼ା ଓ କୁଣ୍ଡଳିନୀ ସାଧନାରେ ସନ୍ନିହିତ କାମକଳା ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ରହିଛି । ମାନବର ଅନ୍ତରାଳରେ ଉଭୟ ଲିଙ୍ଗ ବିଦ୍ୟମାନ । ପ୍ରତ୍ୟେକ ବ୍ୟକ୍ତି ଅର୍ଦ୍ଧ ନର ଓ ଅର୍ଦ୍ଧ ନାରୀ । ଭଗବାନ ଶଙ୍କରଙ୍କୁ ଅର୍ଦ୍ଧନାରୀ ନଟେଶ୍ୱର ରୂପେ ଚିତ୍ରଣ କରାଯାଇଛି । କୃଷ୍ଣ ଓ ରାଧାଙ୍କର ଏପରି ଏକ ସମ୍ମିଳିତ ରୂପ ଚିତ୍ରରେ ଦୃଷ୍ଟିଗୋଚର ହୋଇଥାଏ । ପତିପତ୍ନୀ ଦୁଇଟି ଅଲଗା ଶରୀର ହୋଇଥିଲେ ସୁଦ୍ଧା ଏକପ୍ରାଣ ଅଟନ୍ତି । ଏହା ଏହି ଚିତ୍ରଣର ସ୍ଥୂଳଦର୍ଶନ ଅଟେ ।

ନାରୀ ଲିଙ୍ଗର ସୂକ୍ଷ୍ମ ସ୍ଥଳ ଜନନେନ୍ଦ୍ରିୟର ମୂଳ ଦେଶ ଅଟେ । ଏହାକୁ ଯୋନି କୁହାଯାଏ । ମସ୍ତିଷ୍କର ମଧ୍ୟବିନ୍ଦୁ ବ୍ରହ୍ମରନ୍ଧ୍ରକୁ ଲିଙ୍ଗ କୁହାଯାଏ । ଏହାର ପ୍ରତୀକ ସୁମେରୁ ମୂଳାଧାର ଚକ୍ରର ଯୋନି ଗହ୍ୱରରେ କାମ ଜୀବରୂପେ ଅବସ୍ଥିତ । ଅର୍ଥାତ୍ ଗୋଟିଏ ସ୍ଥାନରେ ହିଁ ଉଭୟ ବିଦ୍ୟମାନ । କିନ୍ତୁ ସେମାନେ ପ୍ରସୁପ୍ତ ଅବସ୍ଥାରେ ରହନ୍ତି । ଏହାର ଜାଗରଣକୁ କୁଣ୍ଡଳିନୀ ଜାଗରଣ କୁହାଯାଇଥାଏ । ଏଇ ଉଭୟର ସଂଯୋଗର ସାଧନାକୁ କାମକଳା କୁହାଯାଏ । ଏହାକୁ କୁଣ୍ଡଳିନୀ ଜାଗରଣର ଭୂମିକା କୁହାଯାଏ । ଶାରୀରିକ କାମ ସେବନ ଏହି ଆଧ୍ୟାତ୍ମିକ କାମ ସେବନର ଛାୟା ମାତ୍ର ।

ଆନ୍ତରିକ କାମ ଶକ୍ତିକୁ ଅନ୍ୟ ଶବ୍ଦରେ ମହାକାଳୀ, ମହାଶକ୍ତି

କୁହାଯାଇପାରେ । ଭୌତିକ ଜୀବନରେ ଏକାକୀ ନର ବା ନାରୀ ଅସ୍ତବ୍ୟସ୍ତ ଅବସ୍ଥାରେ ରହିଥାନ୍ତି । ଆନ୍ତରିକ ଜୀବନରେ ଉଭୟପକ୍ଷୀୟ ବିଦ୍ୟୁତ୍ ଶକ୍ତିର ସମନ୍ୱୟ ହୋଇ ନ ପାରିବାରୁ ସବୁଠାରେ ନୀରସ ନୀରବତା ଦେଖାଦେଇଥାଏ । ଏହାକୁ ଦୂର କରି ସାମଗ୍ରିକ ସାମର୍ଥ୍ୟ ଓ ପ୍ରଫୁଲ୍ଲତା ଉତ୍ପନ୍ନ କରିବା ସକାଶେ କୁଣ୍ଡଳିନୀ ସାଧନା କରାଯାଇଥାଏ । ଏହି ସନ୍ଦର୍ଭରେ ଶାସ୍ତ୍ରରେ ଯେଉଁଠାରେ ସାଧନା ବିଜ୍ଞାନର ଉଲ୍ଲେଖ କରାଯାଇଛି, ସେଠାର କାମକ୍ରୀଡ଼ା ପରି ଶବ୍ଦର ପ୍ରୟୋଗ ମଧ୍ୟ କରାଯାଇଛି । ବସ୍ତୁତଃ ଏହା ଆଧ୍ୟାତ୍ମିକ କାମକଳା ବିଷୟରେ ଆଲୋଚନା ଅଟେ । ଯୋନି-ଲିଙ୍ଗ, କାମବୀଜ, ରଜ-ବୀର୍ଯ୍ୟ ସଂଯୋଗ ଇତ୍ୟାଦି ଶବ୍ଦରେ ଏହି ଅନ୍ତଃଶକ୍ତିର ଜାଗରଣ ବିଷୟରେ ବିଧି ବ୍ୟବସ୍ଥା ସନ୍ନିହିତ ।

**ସ୍ୱୟଂଭୂ ଲିଙ୍ଗ ତନ୍ମଧ୍ୟେ ସରନ୍ଧ୍ରଂ ପଶ୍ଚିମାଳୟମ୍ ।**
**ଧ୍ୟାୟେଜ ପରମେଶାନି ଶିବଂ ଶ୍ୟାମଳସୁନ୍ଦରମ୍ ।।**

-ଶାକ୍ତାନନ୍ଦ ତରଙ୍ଗିଣୀ

ଅର୍ଥାତ୍- ତାହାର ମଧ୍ୟ ରନ୍ଧ୍ର ସହିତ ମହାଲିଙ୍ଗ ରହିଛି । ସେ ସ୍ୱୟଂଭୂ ଏବଂ ଅଧୋମୁଖ, ଶ୍ୟାମଳ ଓ ସୁନ୍ଦର ଅଟନ୍ତି । ତାଙ୍କର ଧ୍ୟାନ କର ।

**ତତ୍ରସ୍ଥିତୋ ମହାଲିଙ୍ଗଃ ସ୍ୱୟଂଭୂଃ ସର୍ବଦା ସୁଖୀ ।**
**ଅଧୋମୁଖଃ କ୍ରିୟାବାଞ୍ଚ କାମବୀଜେନ ଚାଳିତଃ ।।**-କାଳୀ କୁଳାମୃତ

ଅର୍ଥାତ୍- ଏଠାରେ ବ୍ରହ୍ମରନ୍ଧ୍ରରେ ସେହି ମହାଲିଙ୍ଗ ଅବସ୍ଥିତ । ସେ ସ୍ୱୟଂଭୂ ଓ ସୁଖସ୍ୱରୂପ ଅଟନ୍ତି । ତାଙ୍କ ମୁଖ ତଳ ଆଡ଼କୁ ରହିଛି । ସେ ନିରନ୍ତର କ୍ରିୟାଶୀଳ ଅଟନ୍ତି । ସେ କାମବୀଜ ଦ୍ୱାରା ପରିଚାଳିତ ।

**ଆତ୍ମସନ୍ଥଃ ଶିବଂ ତ୍ୟକ୍ତ୍ୱା ବହିଃସ୍ଥଂ ଯଃ ସମର୍ଚ୍ଚୟେତ୍ ।**
**ହସ୍ତସ୍ଥଂ ପିଣ୍ଡମୁତ୍ସୃଜ୍ୟ ଭ୍ରମତେ ଜୀବିତାଶୟା ।।**
**ଆତ୍ମଲିଙ୍ଗାର୍ଚ୍ଚନଂ କୁର୍ଯ୍ୟାଦନାଳସ୍ୟଂ ଦିନେଦିନେ ।**
**ତସ୍ୟ ସ୍ୟାତ୍ ସକଳା ସିଦ୍ଧିର୍ନାତ୍ରି କାର୍ଯ୍ୟା ବିଚାରଣା ।।**- ଶିବ ସଂହିତା

ଅର୍ଥାତ୍- ନିଜ ଶରୀରରେ ଅବସ୍ଥିତ ଶିବଙ୍କୁ ତ୍ୟାଗ କରି ଯେଉଁମାନେ

ବାହାରେ ପୂଜା କରନ୍ତି, ସେମାନେ ହାତରେ ଥିବା ଖାଦ୍ୟକୁ ଛାଡ଼ି ଦେଇ ଏଣେ ତେଣେ ବୁଲି ଖାଦ୍ୟ ସଂଗ୍ରହ କରୁଥିବା ଲୋକଙ୍କ ସହିତ ସମାନ ।

ଆଳସ୍ୟ ତ୍ୟାଗ କରି 'ଆତ୍ମଲିଙ୍ଗ'– ଶିବଙ୍କ ପୂଜା କର । ଏହା ଦ୍ୱାରା ସମସ୍ତ ସଫଳତା ମିଳିବ ।

**ନମୋ ମହାବିନ୍ଦୁମୁଖୀ ଚନ୍ଦ୍ର ସୂର୍ଯ୍ୟ ସ୍ତନ ଦ୍ୱୟା ।**
**ସୁମେରୁଦୀର୍ଘ କଳୟା ଶୋଭମାନା ମହୀପଦା ।।**
**କାମରାଜ କଳାରୂପା ଜାଗର୍ତି ସଚରାଚରା ।**
**ଏତଦ୍ କାମକଳା ବ୍ୟାପ୍ତଂ ଗୃହ୍ୟାଦ୍ ଗୁହ୍ୟତରଂ ମହତ୍ ।।**

–ରୁଦ୍ରୟାମଳ ତନ୍ତ୍ର

ଅର୍ଥାତ୍– ମହାବିନ୍ଦୁ ଏହାର ମୁଖ । ସୂର୍ଯ୍ୟ ଚନ୍ଦ୍ର ଉଭୟ ସ୍ତନ । ସୁମେରୁ ତାହାର ଅର୍ଦ୍ଧ କଳା । ପୃଥିବୀ ତାହାର ଶୋଭା । ଚର ଅଚର ସର୍ବତ୍ର ଏହା କାମକଳା ରୂପେ ଜାଗ୍ରତ ହୋଇଥାଏ । ସମସ୍ତଙ୍କଠାରେ କାମକଳା ରୂପରେ ବ୍ୟାପ୍ତ । ଏହା ଗୁହ୍ୟ ଅପେକ୍ଷା ଅଧିକ ଗୁହ୍ୟ ।

ଜନନେନ୍ଦ୍ରିୟର ମୂଳ ମୂଳାଧାରରେ ଯୋନିର ସ୍ଥାନ ଅଛି ବୋଲି କୁହାଯାଇଛି ।

**ମୂଳାଧାରେ ହି ଯତ୍ ପଦ୍ମଂ ଚତୁଷ୍ପତ୍ରଂ ବ୍ୟବସ୍ଥିତମ୍ ।**
**ତତ୍ର କନ୍ଦେଽସ୍ତି ଯା ଯୋନିସ୍ତସ୍ୟାଂ ସୂର୍ଯ୍ୟୋ ବ୍ୟବସ୍ଥିତଃ ।।**

–ଶିବ ସଂହିତା

ଅର୍ଥାତ୍– ଚାରି ପାଖୁଡ଼ାଯୁକ୍ତ ମୂଳାଧାର ଚକ୍ରର କନ୍ଦ ଭାଗରେ ଯାହା ପ୍ରକାଶବାନ୍, ତାହା ଯୋନି ଅଟେ ।

**ତସ୍ମିନ୍ନାଧାରପଦ୍ମେ ଚ କର୍ଣ୍ଣିକାୟାଂ ସୁଶୋଭନା ।**
**ତ୍ରିକୋଣାବର୍ତ୍ତତେ ଯୋନିଃ ସର୍ବତନ୍ତ୍ରେଷୁ ଗୋପିତାଃ ।।**– ଶିବ ସଂହିତା

ଅର୍ଥାତ୍– ସେହି ଆଧାର ପଦ୍ମର କର୍ଣ୍ଣିକାରେ ଅର୍ଥାତ୍ ଦଣ୍ଡୀ ତ୍ରିକୋଣରେ ଯୋନି ଅବସ୍ଥିତ । ଏହି ଯୋନି ସବୁ ତନ୍ତ୍ରର ଗୋପନୀୟ ଅଟେ ।

**ଯତ୍ତଦ୍‌ଗୁହ୍ୟମିତି ପ୍ରୋକ୍ତଂ ଦେବଯୋନିସ୍ତୁ ସୋଚ୍ୟତେ ।**
**ଅସ୍ୟାଂ ଯୋ ଜାୟତେ ବହ୍ନିଃ ସ କଲ୍ୟାଣ କୃଦୁଚ୍ୟତେ ।।**

–କାତ୍ୟାୟନ ସ୍ମୃତି

ଅର୍ଥାତ୍– ଏହି ଗୁହ୍ୟ ନାମକ ସ୍ଥାନ ଦେବଯୋନି ଅଟେ । ଏଥିରେ ଯେଉଁ ବହ୍ନି ଉତ୍ପନ୍ନ ହୁଏ, ତାହା ପରମ କଲ୍ୟାଣକାରୀ ଅଟେ ।

**ଆଧାରଂ ପ୍ରଥମଂ ଚକ୍ରଂ ସ୍ୱାଧିଷ୍ଠାନଂ ଦ୍ୱିତୀୟକମ୍ ।**
**ଯୋନି ସ୍ଥାନଂ ଦ୍ୱିୟୋର୍ମଧ୍ୟେ କାମରୂପଂ ନିଗଦ୍ୟତେ ।।**

–ଗୋରକ୍ଷ ପଦ୍ଧତି

ଅର୍ଥାତ୍– ପ୍ରଥମ ମୂଳାଧାର ଓ ଦ୍ୱିତୀୟ ସ୍ୱାଧିଷ୍ଠାନ ଚକ୍ର ମଧ୍ୟରେ ଯୋନିର ସ୍ଥାନ ଏବଂ ଏହା କାମରୂପ ପୀଠ ଅଟେ ।

**ଆଧାରାଖ୍ୟେ ଗୁଦସ୍ଥାନେ ପଙ୍କଜଂ ଚ ଚତୁର୍ଦ୍ଦଳମ୍ ।**
**ତନ୍ମଧ୍ୟେ ପ୍ରୋଚ୍ୟତେ ଯୋନିଃ କାମାଖ୍ୟା ସିଦ୍ଧବନ୍ଦିତା ।।**

–ଗୋରକ୍ଷ ପଦ୍ଧତି

ଅର୍ଥାତ୍– ଗୁଦା ସ୍ଥାନରେ ଯେଉଁ ଚତୁର୍ଦ୍ଦଳ କମଳ ବିଖ୍ୟାତ, ତା ମଧ୍ୟରେ ତ୍ରିକୋଣାକାର ଯୋନି ଅବସ୍ଥିତ । ସମସ୍ତ ସିଦ୍ଧଜନ ତାହାର ବନ୍ଦନା କରିଥାନ୍ତି । ଏହା ପଞ୍ଚାଶତ ବର୍ଣ୍ଣରେ ଗଠିତ କାମାଖ୍ୟା ପୀଠ ବୋଲାଏ ।

**ଯତ୍‌ସମାଧୌ ପରଂ ଜ୍ୟୋତିରନନ୍ତଂ ବିଶ୍ୱତୋ ମୁଖମ୍ ।**
**ତସ୍ମିନ୍ ଦୃଷ୍ଟେ ମହାଯୋଗେ ଯାତାୟାତନ୍ନ ବିନ୍ଦତେ ।**

–ଗୋରକ୍ଷ ପଦ୍ଧତି

ଅର୍ଥାତ୍– ଏହି ତ୍ରିକୋଣ ବିଷୟ ସମାଧିରେ ଅନନ୍ତ ବିଶ୍ୱରେ ପରିବ୍ୟାପ୍ତ ହୋଇଥିବା ପରମ ଜ୍ୟୋତି ପ୍ରକଟ ହୋଇଥାଏ । ଏହା କଳାଗ୍ନି ରୂପ । ଧ୍ୟାନ, ଧାରଣା ସମାଧି ଦ୍ୱାରା ଯୋଗୀଗଣ ଯେବେ ଏ ଜ୍ୟୋତି ଦେଖିପାରନ୍ତି, ତାହାପରେ ସେମାନଙ୍କ ଜନ୍ମ ମରଣ ହୋଇ ନଥାଏ ।

ଏ ଉଭୟର ପରସ୍ପର ଭିତରେ ଘନିଷ୍ଠ ସମ୍ବନ୍ଧ ରହିଛି । ଏ ସମ୍ବନ୍ଧ ଯଥାରୂପ

ରହିଲେ ଆତ୍ମବଳ ସମୁନ୍ନତ ହୋଇଯାଏ ଏବଂ ଆତ୍ମଶକ୍ତି ସିଦ୍ଧି ରୂପେ ବିକଶିତ ହୋଇଥାଏ । ସମ୍ବନ୍ଧ ବିଚ୍ଛେଦ ହେଲେ ମନୁଷ୍ୟ ଦୀନ, ଦୁର୍ବଳ, ଅସହାୟ, ଅସଫଳ ଜୀବନ ଯାପନ କରିଥାଏ । କୁଣ୍ଡଳିନୀ ରୂପୀ ଯୋନି ଓ ସହସ୍ରା ରୂପୀ ଲିଙ୍ଗର ସଂଯୋଗ ପୂରଣ କରେ । ଏହାକୁ ଶିବ ଓ ଶକ୍ତିର ସଂଯୋଗ ଏବଂ ଆତ୍ମା ସହିତ ପରମାତ୍ମାଙ୍କ ମିଳନ କୁହାଯାଏ । ସାଧନା କ୍ଷେତ୍ରରେ ଏହି ସଂଯୋଗର ବର୍ଣ୍ଣନା ନିମ୍ନଲିଖିତ ଭାବରେ କରାଯାଇଛି ।

**ଭଗଃ ଶକ୍ତିର୍ଭଗବାନ୍ କାମ ଈଶ ଉଭାଦାତାରିବିହ ସୌଭଗାନାମ୍ ।**
**ସମପ୍ରଧାନୌ ସମସତ୍ତ୍ୱୌ ସମୋଜୌ ତୟୋଃ ଶକ୍ତିରଜରା ବିଶ୍ୱ ଯୋନିଃ ।**

–ତ୍ରିପୁରୋପନିଷଦ୍

ଭଗ ଶକ୍ତି ଅଟେ । କାମରୂପ ଈଶ୍ୱର ଭଗବାନ ଅଟନ୍ତି । ଉଭୟ ସୌଭାଗ୍ୟ ଦେଇଥାନ୍ତି । ଉଭୟଙ୍କର ପ୍ରାଧାନ୍ୟ ସମାନ । ଉଭୟଙ୍କର ସତ୍ତା ସମାନ । ଉଭୟ ସମାନ ଭାବରେ ତେଜସ୍ୱୀ । ଏହାର ଅଜରା ଶକ୍ତି ବିଶ୍ୱର ନିମିତ୍ତ କାରଣ ଅଟେ ।

ଶିବ ଏବଂ ଶକ୍ତିର ସମ୍ମିଶ୍ରଣକୁ ଶକ୍ତିର ଉଦ୍‌ଭବ ଆଧାର ମନେ କରାଯାଏ । ଏହାକୁ ବିଦ୍ୟୁତ୍‌ର 'ରଣ ଓ ଧନ' ରୂପେ ମାନିବା ଉଚିତ । ଏ ଦୁଇଟିର ସମ୍ମିଶ୍ରଣ ଫଳରେ ବିଦ୍ୟୁତ୍ ଉତ୍ପାଦିତ ହୋଇଥାଏ । ଏ ଦୁଇ ଶକ୍ତି କେନ୍ଦ୍ରର ସଂଯୋଗ ହିଁ ଆଧ୍ୟାତ୍ମିକ ବିଦ୍ୟୁତ୍ ଉତ୍ପନ୍ନ ହେବାର ଆଧାର । ଶିବ ପୂଜାରେ ଏହି ଆଧ୍ୟାତ୍ମିକ ଯୋନି ଲିଙ୍ଗର ସଂଯୋଗ ପ୍ରତୀକ ରୂପେ ଗ୍ରହଣ କରାଯାଇଛି ।

**ଲିଙ୍ଗବେଦୀ ଉମାଦେବୀ ଲିଂଗଂ ସାକ୍ଷାତ୍ ମହେଶ୍ୱରଃ ।** –ଲିଙ୍ଗ ପୁରାଣ

ଅର୍ଥାତ୍– ଲିଙ୍ଗବେଦୀ (ଯୋନି) ଦେବୀ ଉମା ଅଟନ୍ତି ଓ ଲିଙ୍ଗ ସାକ୍ଷାତ୍ ମହେଶ୍ୱର ଅଟନ୍ତି ।

**ସା ଭଗାଖ୍ୟା ଜଗଦ୍ଧାତ୍ରୀ ଲିଙ୍ଗ ମୂର୍ତ୍ତେ ସ୍ତ୍ରିବେଦିକା ।**
**ଲିଙ୍ଗସ୍ତୁ ଭଗବାନ୍ ଦ୍ୱାଭ୍ୟାଂ ଜଗତ୍‌ସୃଷ୍ଟି ର୍ଦ୍ୱିଜୋତ୍ତମାଃ ।।**
**ଲିଙ୍ଗମୂର୍ତ୍ତିଃ ଶିବୋ ଜ୍ୟୋତି ତମସଶ୍ଚୋପରି ସ୍ଥିତଃ ।**–ଶିବ ପୁରାଣ

ଅର୍ଥାତ୍– ସେ ମହାଦେବୀ ଭଗ ସଂଜ୍ଞାଯୁକ୍ତ ଏବଂ ଏ ଜଗତର ଧାତ୍ରୀ

ଅଟନ୍ତି ତଥା ଲିଙ୍ଗରୂପ ଶିବଙ୍କ ତ୍ରିଗୁଣା ପ୍ରକୃତି ରୂପ ଅଟନ୍ତି । ହେ ଦ୍ୱିଜୋତ୍ତମ ! ଲିଙ୍ଗ ରୂପ ଭଗବାନ ଶିବ ନିତ୍ୟ ଭଗଯୁକ୍ତ ହୋଇଥାଆନ୍ତି ଏବଂ ସେ ଦୁହିଁଙ୍କଠାରୁ ଜଗତ ସୃଷ୍ଟି ହୋଇଛି । ଲିଙ୍ଗସ୍ୱରୂପ ଶିବ ସ୍ୱତଃ ଜ୍ୟୋତିର୍ମୟ । ସେ ମାୟାରତିମିରର ଊର୍ଦ୍ଧ୍ୱରେ ରହିଥାନ୍ତି ।

**ଧ୍ୟାୟେତ୍ କୁଣ୍ଡଳିନୀ ଦେବୀ ସ୍ୱୟଂଭୂ ଲିଙ୍ଗ ବେଷ୍ଟିନୀମ୍ ।**
**ଶ୍ୟାମାଂ ସୂକ୍ଷ୍ମାଂ ସୃଷ୍ଟିରୂପାଂ ସୃଷ୍ଟିସ୍ଥିତିଲୟାତ୍ମିକାମ୍ ।**
**ବିଶ୍ୱାତୀତଂ ଜ୍ଞାନରୂପାଂ ଚିନ୍ତୟେଦ୍ ଊର୍ଦ୍ଧ୍ୱବାହିନୀମ୍ ।।**

–ଷଟ୍‌ଚକ୍ର ନିରୂପଣମ୍

ଅର୍ଥାତ୍– ସ୍ୱୟଂଭୂ ଲିଙ୍ଗକୁ ବେଢ଼ି ରହିଥିବା କୁଣ୍ଡଳିନୀ ମହାଶକ୍ତିକୁ ଶ୍ୟାମା, ସୂକ୍ଷ୍ମା, ସୃଷ୍ଟିରୂପା, ବିଶ୍ୱକୁ ଉତ୍ପନ୍ନ ଓ ଲୟ କରୁଥିବା, ବିଶ୍ୱାତୀତ, ଜ୍ଞାନରୂପ ଊର୍ଦ୍ଧ୍ୱବାହିନୀ ରୂପେ ଧ୍ୟାନ କର ।

ଉଭୟ ଲିଙ୍ଗ ଗୋଟିଏ ସ୍ଥାନରେ ପ୍ରତିଷ୍ଠାପିତ । ଜନନେନ୍ଦ୍ରିୟର ମୂଳ ମୂଳାଧାର ଚକ୍ରରେ ସୂକ୍ଷ୍ମ ଯୋନି ଗହ୍ୱର ରହିଛି । ଏହାକୁ ଋଣ ବିଦ୍ୟୁତ୍ କୁହାଯାଇପାରେ । ତାହାର ମଧ୍ୟ ଭାଗରେ ସହସ୍ରାର ଚକ୍ରର ପ୍ରତିନିଧି ରୂପେ ଏକ ସାମାନ୍ୟ ଉଚ୍ଚ ସ୍ଥାନ ରହିଛି । ଏହାକୁ 'ସୁମେରୁ' କୁହାଯାଏ । ସୁମେରୁ ପର୍ବତରେ ଦେବତାଙ୍କ ନିବାସ ରହିଛି ବୋଲି ମନେ କରାଯାଏ । ସମୁଦ୍ର ମନ୍ଥନରେ ଏହି ପର୍ବତର ବର୍ଣ୍ଣନା ରହିଛି । ସାଢ଼େ ତିନି ଥର ଗୁଡ଼େଇ ହୋଇଥିବା ଶେଷନାଗ ଏହି ସ୍ଥାନରେ ରହନ୍ତି । ସେହି ଉଚ୍ଚ କେନ୍ଦ୍ରକୁ 'କାମବୀଜ' କୁହାଯାଇଥାଏ । ଗୋଟିଏ ସ୍ଥାନରେ ଉଭୟଙ୍କର ସଂଯୋଗ ହେବା ଦ୍ୱାରା ସାଧକର 'ଆତ୍ମରତି' ପ୍ରୟୋଜନ ସହଜରେ ପୂରଣ ହୋଇଯାଏ । ଏପରି ଭାବରେ କୁଣ୍ଡଳିନୀ ସାଧନା ଆତ୍ମାର ଉଭୟପକ୍ଷୀ ଲିଙ୍ଗର ସମନ୍ୱୟ, ସମ୍ମିଶ୍ରଣ ଅଟେ । ଏହା ଜାଗ୍ରତ ହେଲେ ଲୋମଲୋମରେ, ଅନ୍ତଃକ୍ଷେତ୍ରର ପ୍ରତ୍ୟେକ ପ୍ରସୁପ୍ତ କେନ୍ଦ୍ରରେ ଆଲୋଡ଼ନ ଉତ୍ପନ୍ନ ହୋଇଥାଏ ଏବଂ ଆନନ୍ଦ, ଉଲ୍ଲାସର ପ୍ରବାହ ଆରମ୍ଭ ହୋଇଯାଏ । ଏହି ସମନ୍ୱୟ କେନ୍ଦ୍ର କାମବୀଜର ବର୍ଣ୍ଣନା ନିମ୍ନୋକ୍ତ ପ୍ରକାର କରାଯାଇଛି–

ଯୋନି ମଧ୍ୟେ ମହାଲିଂଗଂ ପଶ୍ଚିମାଭିମୁଖସ୍ଥିତମ୍ ।
ମସ୍ତକେ ମଣିବଦ୍‌ବିମ୍ବଂ ଯୋ ଜାନାତି ସ ଯୋଗବିତ୍ ।।

–ଗୋରକ୍ଷ ପଦ୍ଧତି

ଅର୍ଥାତ୍– ତ୍ରିକୋଣାକାର ଯୋନିରେ ସୁଷୁମ୍ନା ଦ୍ୱାର ସମ୍ମୁଖରେ ସ୍ୱୟଂଭୁ ନାମକ ମହାଲିଙ୍ଗ ଅଛନ୍ତି । ତାଙ୍କ ମସ୍ତକରେ ମଣି ସମାନ ଦେଦୀପ୍ୟମାନ ବିମ୍ବ ରହିଛି । ଏହା ହିଁ କୁଣ୍ଡଳିନୀ ଜୀବାଧାରର ମୋକ୍ଷ ଦ୍ୱାର ଅଟେ । ଯେଉଁମାନେ ଏହାକୁ ସମ୍ୟକ୍ ରୂପେ ଜାଣିପାରନ୍ତି, ସେମାନଙ୍କୁ ଯୋଗବିଦ୍ କୁହାଯାଏ ।

ତପ୍ତଚାମୀକରାଭାସଂ ତଡ଼ିଲ୍ଲେଖେବ ବିସ୍ଫୁରତ୍ ।
ତ୍ରିକୋଣଂ ତତ୍‌ପରଂ ବହ୍ନି ରଧୋ ମେଢ୍ରାତ୍ ପ୍ରତଷ୍ଠିତମ୍ ।

–ଗୋରକ୍ଷ ପଦ୍ଧତି

ଅର୍ଥାତ୍– ଲିଙ୍ଗସ୍ଥାନ ତଳକୁ ମୂଳଧାର କର୍ଣ୍ଣିକାରେ ଉତ୍ତପ୍ତ ସ୍ୱର୍ଣ୍ଣ ବର୍ଣ୍ଣଯୁକ୍ତ ବିଦ୍ୟୁତ୍ ସମାନ ଉଜ୍ଜ୍ୱଳ ଯେଉଁ ତ୍ରିକୋଣ ରହିଛି, ତାହା କାଳାଗ୍ନିର ସ୍ଥାନ ଅଟେ ।

ପୂର୍ବୋକ୍ତା ଡାକିନୀ ତତ୍ର କର୍ଣ୍ଣିକାୟାଂ ତ୍ରିକୋଣକମ୍ ।
ଯନ୍ମଧ୍ୟେ ବିବରଂ ସୂକ୍ଷ୍ମଂ ରକ୍ତାଭଂ କାମବୀଜକମ୍ ।
ତତ୍ର ସ୍ୱୟଂଭୂ ଲିଙ୍ଗସ୍ଥାଧୋମୁଖାରକ୍ତକପ୍ରଭଃ ।।–ଶକ୍ତି ତନ୍ତ୍ର

ଅର୍ଥାତ୍– ତାହା ବ୍ରହ୍ମ ଡାକିନୀ ଶକ୍ତି ଅଟେ । କର୍ଣ୍ଣିକାରେ ତ୍ରିକୋଣ ରହିଛି । ତା ମଧ୍ୟରେ ଏକ ସୂକ୍ଷ୍ମ ବିବର ରହିଛି । ଏହା ହିଁ ରକ୍ତ ଆଭାଯୁକ୍ତ କାମବୀଜ ସ୍ୱୟଂଭୂ, ଅଧୋମୁଖ, ମହାଲିଙ୍ଗ ଅଟନ୍ତି ।

ଆଧାରଂ ପ୍ରଥମଂ ଚକ୍ରଂ ସ୍ୱାଧିଷ୍ଠାନଂ ଦ୍ୱିତୀୟକମ୍ ।
ଯୋନିସ୍ଥାନଂ ଦ୍ୱୟୋର୍ମଧ୍ୟେ କାମରୂପଂ ନିଗଦ୍ୟତେ ।।
ଆଧାରାଖ୍ୟେ ଗୁଦସ୍ଥାନେ ପଙ୍କଜଂ ଚ ଚତୁର୍ଦ୍ଦଳମ୍ ।
ତନ୍ମଧ୍ୟେ ପ୍ରୋଚ୍ୟତେ ଯୋନିଃ, କାମାଖ୍ୟା ସିଦ୍ଧ ବନ୍ଦିତା ।।
ଯୋନି ମଧ୍ୟେ ମହାଲିଂଗଂ ପଶ୍ଚିମାଭିମୁଖ ସ୍ଥିତମ୍ ।
ମସ୍ତକେ ମଣିବଦ୍ ବିମ୍ବଂ ଯୋ ଜାନାତି ସ ଯୋଗବିତ୍ ।।

ତପ୍ତଚାମୀ କରାଭାସଂ ତଡ଼ିଲ୍ଲେଖେବ ବିସ୍ଫୁରତ୍ ।
ତ୍ରିକୋଣଂ ତତ୍ପରଂ ବହ୍ନିରଧୋମେଢ୍ରାତ୍ ପ୍ରତିଷ୍ଠିତମ୍ ।।
ଯତ୍ ସମାଧୌ ପରଂ ଜ୍ୟୋତିରନନ୍ତ ବିଶ୍ୱତୋମୁଖମ୍ ।
ତସ୍ମିନ୍ ଦୃଷ୍ଟେ ମହାଯୋଗେ ଯାତାୟାତନ୍ନ ବିନ୍ଦତେ ।।

–ଗୋରକ୍ଷ ପଦ୍ଧତି

ଅର୍ଥାତ୍– ମୂଳାଧାର ଓ ସ୍ୱାଧିଷ୍ଠାନ ଏହି ଦୁଇ ଚକ୍ର ମଧ୍ୟରେ ଯେଉଁ ଯୋନି ସ୍ଥାନ ରହିଛି, ତାହା 'କାମରୂପ' ପୀଠ ଅଟେ ।

ଚଉଦ ପାଖୁଡ଼ାଯୁକ୍ତ ମୂଳାଧାର ଚକ୍ର ମଧ୍ୟରେ ତ୍ରିକୋଣାକାର ଯୋନି ରହିଛି । ଏହାକୁ 'କାମାଖ୍ୟା' ପୀଠ କୁହାଯାଏ । ଏହା ସିଦ୍ଧମାନଙ୍କ ଦ୍ୱାରା ଅଭିବନ୍ଦିତ ଅଟେ ।

ଏ ଯୋନି ମଧ୍ୟରେ ପଶ୍ଚିମାଭିମୁଖୀ ମହାଲିଙ୍ଗ ଅଛନ୍ତି ତଥା ମସ୍ତକରେ ମଣିସମାନ ଜ୍ୟୋତିର୍ମୟ ବିମ୍ବ ଅଛି । ଯେଉଁମାନେ ଏ ତଥ୍ୟକୁ ଜାଣନ୍ତି, ସେମାନେ ଯୋଗବିଦ୍ ।

ଲିଙ୍ଗ ସ୍ଥାନ ତଳକୁ, ମୂଳାଧାର କର୍ଣ୍ଣିକାରେ ଅବସ୍ଥିତ ତପ୍ତ ସୁବର୍ଣ୍ଣ ସମାନ ଆଭାଯୁକ୍ତ, ବିଦ୍ୟୁତ୍ ପରି ଉଜ୍ଜ୍ୱଳ ଯେଉଁ ତ୍ରିକୋଣ ରହିଛି, ତାହାକୁ କାଳାଗ୍ନି କୁହାଯାଏ । ଏହି ବିଶ୍ୱବ୍ୟାପୀ ପରମଜ୍ୟୋତିରେ ତନ୍ମୟ ହେଲେ ମହାଯୋଗର ସମାଧି ଅବସ୍ଥା ଲାଭ କରାଯାଇପାରେ ଓ ଜନ୍ମ ମରଣରୁ ମୁକ୍ତି ମିଳିପାରେ ।

ତତ୍ର ବନ୍ଧୁକ ପୁଷ୍ପାଭଂ କାମବୀଜଂ ପ୍ରକୀର୍ତ୍ତିତମ୍ ।
କଳଲେନ ସମଂ ଯୋଗେ ପ୍ରଯୁକ୍ତାକ୍ଷର ରୂପିଣମ୍ ।।
ସୁଷୁମ୍ନାପି ଚ ସଂଶ୍ଲିଷ୍ଟୋ ବୀଜଂ ତତ୍ର ବରଂ ସ୍ଥିତମ୍ ।
ଶରଚ୍ଚନ୍ଦ୍ରନିଭଂ ତେଜସ୍ୱୟମେତତ୍ ସ୍ଫୁରତ୍ ସ୍ଥିତମ୍ ।।
ସୂର୍ଯ୍ୟ କୋଟି ପ୍ରତୀକାଶଂ ଚନ୍ଦ୍ରକୋଟି ସୁଶୀତଳମ୍ ।
ଏତତ୍ତ୍ରୟଂ ମିଳିତ୍ୱୈବ ଦେବୀ ତ୍ରିପୁର ଭୈରବୀ ।।
ବୀଜସଂଜ୍ଞଂ ପରଂ ତେଜସ୍ତଦେବ ପରିକୀର୍ତ୍ତିତମ୍ ।

**କ୍ରିୟା ବିଜ୍ଞାନ ଶକ୍ତିଭ୍ୟାଂ ଯୁତଂ ଯଦ୍‌ପରିତୋ ଭ୍ରମତ୍ ।**
**ଉତ୍ତିଷ୍ଠ ଦ୍ୱିଶତ ସ୍କନ୍ଧ ସୂକ୍ଷ୍ମଂ ଶୋଣଶିଖାଯୁତମ୍ ।**
**ଯୋନିସ୍ଥଂ ତଦ୍‌ପରଂ ତେଜଃ ସ୍ୱୟଂଭୂ ଲିଙ୍ଗସଂଜ୍ଞିତମ୍ ।।** –ଶିବ ସଂହିତା

ଅର୍ଥାତ୍– ଯେଉଁ ସ୍ଥାନରେ କୁଣ୍ଡଳିନୀ ଅଛି, ସେହି ସ୍ଥାନରେ ପୁଷ୍ପ ସମାନ ସ୍ୱର୍ଣ୍ଣ ଆଭାଯୁକ୍ତ ଉଜ୍ଜ୍ୱଳ ରକ୍ତବର୍ଣ୍ଣ କାମବୀଜ ରହିଛି ।

କୁଣ୍ଡଳିନୀ, ସୁଷୁମ୍ନା ଓ କାମବୀଜ ସୂର୍ଯ୍ୟ ଚନ୍ଦ୍ରଙ୍କ ପରି ଆଲୋକମୟ । ଏ ତିନିଙ୍କର ମିଳନକୁ ତ୍ରିପୁର ଭୈରବୀ କୁହାଯାଏ । ଏହା ତେଜସ୍ୱୀ ତତ୍ତ୍ୱର ବୀଜସଂଜ୍ଞା ।

ଏହି ବୀଜ ଜ୍ଞାନ ଓ କ୍ରିୟାଶକ୍ତି ସହିତ ସଂଯୁକ୍ତ ହୋଇ ଶରୀରରେ ଭ୍ରମଣ କରେ ଏବଂ ଊର୍ଦ୍ଧ୍ୱଗାମୀ ହୁଏ । ଏହି ପରମ ତେଜସ୍ୱୀ ଅଗ୍ନିର ସ୍ଥାନ ହେଉଛି ଯୋନି । ଏହାକୁ 'ସ୍ୱୟଂମ୍ଭୂ ଲିଙ୍ଗ' କୁହାଯାଏ ।

ଯେଉଁ ସ୍ଥାନରେ କୁଣ୍ଡଳିନୀ ରହିଛି, ସେହି ସ୍ଥାନରେ ସୁଷୁମ୍ନା କାମବୀଜ ସହିତ ରହିଛି । ଏହି ବୀଜ ଶରଚ୍ଚନ୍ଦ୍ର ସମାନ ତେଜୋମୟ । ତାହା ନିଜେ କୋଟି ସୂର୍ଯ୍ୟ ସମାନ ପ୍ରଭାଯୁକ୍ତ ଓ କୋଟି ଚନ୍ଦ୍ର ସମାନ ଶୀତଳ ।

ସ୍ଥୂଳ ଶରୀରରେ ନାରୀର ପ୍ରଜନନ ଦ୍ରବ୍ୟକୁ ରଜ କୁହାଯାଏ । ନରର ଉତ୍ପାଦକ ଦ୍ରବ୍ୟ ବୀଜ ଅଟେ । ସୂକ୍ଷ୍ମ ଶରୀରରେ ଏ ଦୁଇଟି କେବଳ ଗୋଟିଏ ଶରୀରରେ ପ୍ରଚୁର ମାତ୍ରାରେ ରହିଛି । ତାହାର ସ୍ଥାନ ନିର୍ଦ୍ଧାରିତ । ଏ ଦୁଇଟି ପୃଥକ ଭାବରେ ରହିବା ଯୋଗୁଁ ଜୀବନରେ କୌଣସି ବିଶେଷ ଉପଲବ୍ଧି ମିଳେ ନାହିଁ । କିନ୍ତୁ ଏହା ସଂଯୋଗ ହେଲେ ଜୀବନପୁଷ୍ପର ପରାଗ ମକରନ୍ଦ ପରସ୍ପର ସହିତ ମିଶି ଫଳ ରୂପେ ଦେଖାଯାନ୍ତି ଓ ସଫଳ ଜୀବନର ଅଗଣିତ ସମ୍ଭାବନା ଦେଖାଯାଏ । ଗୋଟିଏ ଶରୀରରେ ବିଦ୍ୟମାନ ଏହି ଉଭୟ ରସର ବର୍ଣ୍ଣନା ନିମ୍ନୋକ୍ତ ରୂପେ କରାଯାଇଛି ।

**ଯୋନିସ୍ଥାନେ ମହାକ୍ଷେତ୍ରେ ଜପା ବନ୍ଧୁକସନ୍ନିଭମ୍ ।**
**ରଜୋବସତି ଜନ୍ତୁନାଂ ଦେବୀତତ୍ତ୍ୱଂ ସମାହିତମ୍ ।।**

**ରଜସୋ ରେତସୋ ଯୋଗାଦ୍ ରାଜଯୋଗ ଇତି ସ୍ମୃତଃ ।।**

–ଯୋଗ ଶିଖୋପନିଷଦ୍

ଅର୍ଥାତ୍– ଯୋନି ସ୍ଥାନ ରୂପୀ ମୂଳାଧାର ମହାକ୍ଷେତ୍ରରେ ଜବାକୁସୁମ ବର୍ଣ୍ଣର ରଜ ପ୍ରତ୍ୟେକ ଜୀବଧାରୀର ଶରୀରରେ ଥାଏ । ଏହାକୁ ଦେବୀତତ୍ତ୍ୱ କୁହାଯାଏ । ଏହି ରଜ ଓ ବୀର୍ଯ୍ୟର ସଂଯୋଗରୁ ରାଜଯୋଗ ପ୍ରାପ୍ତି ହୋଇଥାଏ । ଅର୍ଥାତ୍ ଏ ଦୁଇଟିର ସଂଯୋଗର ଫଳ ରାଜଯୋଗ ଅଟେ ।

ଗୁଦା (ମଳଦ୍ୱାର) ଓ ଉପସ୍ଥ ମଧ୍ୟବର୍ତ୍ତୀ ସ୍ଥାନରେ ସୀବନୀ ଉପରେ ତ୍ରିକୋଣାକୃତି ଗୁହ୍ୟ ଗହ୍ୱର ରହିଛି । ଏହାକୁ 'ଯୋନି ସ୍ଥାନ' କୁହାଯାଏ ।

**ଗଳିତୋପି ଯଦା ବିନ୍ଦୁଃ ସଂପ୍ରାପ୍ତୋ ଯୋନି ମଣ୍ଡଳେ ।**
**ଜ୍ୱଳିତୋପି ଯଥା ବିନ୍ଦୁ ସଂପ୍ରାପ୍ତଶ୍ଚ ହୁତାଶନମ୍ ।।**
**ବ୍ରଜତ୍ୟୂର୍ହର୍ବ ହଠାଚ୍ଛକ୍ତ୍ୟା ନିବଦ୍ଧୋ ଯୋନିମୁଦ୍ରୟା ।**
**ସ ଏବ ଦ୍ୱିବିଧୋ ବିନ୍ଦୁ, ପାଣ୍ଡୁରୋ ଲୋହିତସ୍ତଥା ।।**
**ପାଣ୍ଡୁରଂ ଶୁକ୍ରମିତ୍ୟାହୁ ର୍ଲୋହିତାଖ୍ୟୋ ମହାରଜଃ ।**
**ବିଦ୍ରୁମ ଦ୍ରୁମ ସଂକାଶଂ ଯୋନିସ୍ଥାନେ ସ୍ଥିତଂ ରଜଃ ।**
**ଶୀର୍ଷସ୍ଥାନେ ବସେଦ୍ବିନ୍ଦୁସ୍ତୟୋରୈକ୍ୟଂ ସୁଦୁର୍ଲଭମ୍ ।**

–ଧ୍ୟାନବିନ୍ଦୁ ଉପନିଷଦ୍

ଅର୍ଥାତ୍– ସହସ୍ରାରରୁ କ୍ଷରିତ ହୋଇଥିବା ବୀର୍ଯ୍ୟକୁ ଯେବେ ଯୋନି ସ୍ଥାନକୁ ନିଆଯାଏ, ତେବେ କୁଣ୍ଡଳିନୀ ଅଗ୍ନିକୁଣ୍ଡରେ ପଡ଼ି ଜଳିଥିବା ଏହି ବୀର୍ଯ୍ୟକୁ ଯୋନିମୁଦ୍ରାର ଅଭ୍ୟାସ ଦ୍ୱାରା ହଠାତ୍ ଉପରକୁ ଚଢ଼ାଇ ଦିଆଯାଏ । ଏହା ପ୍ରଚଣ୍ଡ ତେଜ ରୂପେ ପରିଣତ ହୋଇଥାଏ । ଏହା ହିଁ ଆଧ୍ୟାତ୍ମିକ କାମ ସେବନ ଓ ଗର୍ଭଧାରଣ ଅଟେ ।

**ସ ପୁନର୍ଦ୍ୱିବିଧୋ ବିନ୍ଦୁଃ ପାଣ୍ଡରୋଲୋହିତ ସ୍ତଥା ।**
**ପାଣ୍ଡରଂ ଶୁକ୍ରମିତ୍ୟାହୁର୍ଲୋହିତାଖ୍ୟୋ ମହାରଜଃ ।।**

–ଗୋରକ୍ଷ ପଦ୍ଧତି

ଅର୍ଥାତ୍– ବିନ୍ଦୁ ଦୁଇ ପ୍ରକାରର । ଗୋଟିଏ ପାଣ୍ଡୁବର୍ଣ୍ଣ । ଏହାକୁ ଶୁକ୍ର କୁହାଯାଏ । ଅନ୍ୟଟି ଲୋହିତବର୍ଣ୍ଣ । ଏହାକୁ ମହାରଜ କୁହାଯାଏ ।

**ସିନ୍ଦୁରଦ୍ରବସଂକାଶଂ ନାଭିସ୍ଥାନେ ସ୍ଥିତଃ ରଜଃ ।**

**ଶୀର୍ଷସ୍ଥାନେ ସ୍ଥିତୋ ବିନ୍ଦୁସ୍ତୟୋରୈକ୍ୟଂ ସୁଦୁର୍ଲଭମ୍ ।**–ଗୋରକ୍ଷ ପଦ୍ଧତି

ଅର୍ଥାତ୍– ସିନ୍ଦୁର ଦ୍ରବ (ରସ) ପରି ରଜ ସୂର୍ଯ୍ୟ ସ୍ଥାନ ନାଭି ମଣ୍ଡଳରେ ରହିଥାଏ । ବିନ୍ଦୁ (ବୀର୍ଯ୍ୟ) ଚନ୍ଦ୍ରର ସ୍ଥାନ କଣ୍ଠ ଦେଶର ଷୋଡ଼ଶାଧାର ଚକ୍ରରେ ସ୍ଥିର ରହେ । ଏହି ଉଭୟର ଐକ୍ୟ ଅତ୍ୟନ୍ତ ଦୁର୍ଲଭ ଅଟେ ।

**ବିନ୍ଦୁଶିବୋ ରଜଃ ଶକ୍ତିଶ୍ଚନ୍ଦ୍ରୋ ବିନ୍ଦୁଃ ରଜୋରବିଃ ।**

**ଅନୟୋଃ ସଂଗମାଦେବ ପ୍ରାପ୍ୟତେ ପରମଂ ପଦମ୍ ।।**

–ଗୋରକ୍ଷ ପଦ୍ଧତି

ଅର୍ଥାତ୍– ବିନ୍ଦୁ ଶିବ ଓ ରଜ ଶକ୍ତି ଅଟେ । ଏହା ଏକତ୍ର ହେଲେ ଯୋଗସିଦ୍ଧ ଓ ପରମପଦ ପ୍ରାପ୍ତି ହୋଇଥାଏ । ଚନ୍ଦ୍ର ଓ ସୂର୍ଯ୍ୟର ଏକୀକରଣ କରିବା ହିଁ ଯୋଗ ଅଟେ ।

**ବାୟୁନା ଶକ୍ତି ଚାରେଣ ପ୍ରେରିତଂ ତୁ ଯଦା ରଜଃ ।**

**ଯାତି ବିନ୍ଦୋଃ ସହୈକତ୍ୱଂ ଭବେଦ୍ଦିବ୍ୟଂ ବପୁସ୍ତତଃ ।।**

–ଗୋରକ୍ଷ ପଦ୍ଧତି

ଅର୍ଥାତ୍– ଶକ୍ତିଚାଳିନୀ ବିଧି ଦ୍ୱାରା ବାୟୁ ସାହାଯ୍ୟରେ ଯେତେବେଳେ ରଜ ବିନ୍ଦୁ ସହିତ ଐକ୍ୟ ଲାଭ କରେ, ସେତେବେଳେ ଶରୀର ଦିବ୍ୟ ହୋଇଯାଏ ।

**ଶରୀରସ୍ଥା ରଜୋବୀର୍ଯ୍ୟଏକତା ସିଦ୍ଧିଦାୟିକା ।**

**ସ ବିନ୍ଦୁସ୍ତଦ୍‌ରଜଶ୍ଚୈବ ଏକୀଭୂତ ସ୍ୱଦେହଗୌ ।।**

**ବଜ୍ରୋଲ୍ୟଭ୍ୟାସଯୋଗେନ ସର୍ବସିଦ୍ଧିଂ ପ୍ରୟଚ୍ଛତଃ ।**

–ହଠଯୋଗ ପ୍ରଦୀପିକା

ଅର୍ଥାତ୍– ନିଜ ଦେହରେ ଥିବା ରଜ ଓ ବୀର୍ଯ୍ୟ ବଜ୍ରୋଲି ଅଭ୍ୟାସ ଯୋଗେ ସର୍ବସିଦ୍ଧିପ୍ରଦ ହୋଇଥାଏ ।

ଶାରୀରିକ କାମସେବନ ତୁଳନାରେ ଆତ୍ମିକ କାମସେବନ ବହୁଗୁଣ ଅଧିକ ଆନନ୍ଦଦାୟକ । ଶାରୀରିକ କାମକ୍ରୀଡ଼ାକୁ ବିଷୟାନନ୍ଦ ଓ ଆତ୍ମରତିକୁ ବ୍ରହ୍ମାନନ୍ଦ କୁହାଯାଇଛି । ବିଷୟାନନ୍ଦ ତୁଳନାରେ ବ୍ରହ୍ମାନନ୍ଦର ଆନନ୍ଦ ଓ ପ୍ରତିଫଳ କୋଟିଗୁଣ ବେଶୀ । ଶାରୀରିକ ସଂଯୋଗ ଦ୍ୱାରା ଶରୀରଧାରୀ ସନ୍ତାନ ଉତ୍ପନ୍ନ ହୋଇଥାଏ । ଆତ୍ମିକ ସଂଯୋଗ ପ୍ରଚଣ୍ଡ ଆତ୍ମବଳ ଓ ବିଶୁଦ୍ଧ ବିବେକ ଉତ୍ପନ୍ନ କରେ । ଉମା ଓ ମହେଶ୍ୱରଙ୍କ ବିବାହ ପରେ ଦୁଇ ପୁତ୍ରଙ୍କ ଜନ୍ମ ହୋଇଥିଲା । ସେଥିରୁ ଏକ ସ୍କନ୍ଦ (ଆତ୍ମବଳ) ଓ ଅନ୍ୟଟି ସନ୍ତାନ ଗଣେଶ (ପ୍ରଜ୍ଞା, ଆଲୋକ) । କୁଣ୍ଡଳିନୀ ସାଧକ ନିଜ ଆତ୍ମଲୋକରେ ଏ ଦୁହିଁଙ୍କର ଜନ୍ମ, ବୃଦ୍ଧି ଓ ପରିପୁଷ୍ଟ ହେବା ଦେଖିଥାଏ ।

ସ୍ଥୁଳ କାମସେବନ ପ୍ରତି ବିମୁଖ ହୋଇ ଏହି ଆତ୍ମରତି ଅଧିକ ସଫଳତାର ସହିତ ସମ୍ପନ୍ନ କରାଯାଇପାରେ । ତେଣୁ ଏ ସାଧନାରେ ଶାରୀରିକ ବ୍ରହ୍ମଚର୍ଯ୍ୟର ଆବଶ୍ୟକତା ପ୍ରତିପାଦନ କରାଯାଇଛି ଏବଂ ବାସନାତ୍ମକ କାମବିକାର ଠାରୁ ଦୂରରେ ରହିବା ସକାଶେ ନିର୍ଦ୍ଦେଶ ଦିଆଯାଇଛି । ଶିବ ନିଜ ତୃତୀୟ ନେତ୍ର ତତ୍ତ୍ୱ ବିବେକ ଦ୍ୱାରା ସ୍ଥୁଳ କାମ ସେବନକୁ ଭସ୍ମୀଭୂତ କରିବା, ତାହାର ସୂକ୍ଷ୍ମ ଶରୀରକୁ ଅଜର ଅମର କରିବା ଏହି ତଥ୍ୟର ଆଳଙ୍କାରିକ ବର୍ଣ୍ଣନା ଅଟେ । ଏହା ଶାରୀରିକ କାମସେବନରୁ ବିରତ ହୋଇ ଆତ୍ମରତିରେ ସଂଲଗ୍ନ ହେବାର ପ୍ରେରଣା ଅଟେ । କାମ ଦହନ ପରେ ତାଙ୍କ ପତ୍ନୀ ରତିଙ୍କ ପ୍ରାର୍ଥନା ଯୋଗୁଁ ଶିବ କାମର ଅଶରୀରୀ ରୂପେ ବଞ୍ଚି ରହିବାର ବରଦାନ ଦେଇଥିଲେ । ରତିକୁ ବିଧବା ହେବାକୁ ଦେଇ ନଥିଲେ ଏବଂ ତାହାକୁ ଆତ୍ମରତିରେ ପରିଣତ କରିଥିଲେ । ଏହା ହିଁ ହେଉଛି ବାସନାତ୍ମକ ଅଗ୍ନିର ଆଦ୍ୟ ଅଗ୍ନି ବା କାଳାଗ୍ନି ରୂପରେ ପରିଣିତ ହେବାର ପ୍ରୟୋଜନ–

**ଭସ୍ମୀଭୂତେ ସ୍ମରେ ଶମ୍ଭୁ ତୃତୀୟନୟନାଗ୍ନି ।**
**ତସ୍ମିନ୍ ପ୍ରବିଷ୍ଟେ ଜଳଧୌ ବଦ ତ୍ୱଂ କିମଭୂତତଃ ।**

–ଶିବ ପୁରାଣ

ଅର୍ଥାତ୍- ଶିବଙ୍କ ତୃତୀୟ ନୟନର ପ୍ରଦୀପ୍ତ ଅଗ୍ନିଜ୍ଵାଳାରେ କାମଦେବ ଭସ୍ମ ହୋଇ ଗଲେ ଏବଂ ସେହି ଅଗ୍ନି ସମୁଦ୍ରରେ ପ୍ରବେଶ କଲେ, ତା ପରେ କ'ଣ ହେଲା ?

**ତଂ ଚ ଜ୍ଞାତ୍ଵା ତଥାଭୂତଂ ତୃତୀୟେନେକ୍ଷଣେନ ବୈ ।**
**ସମର୍ଜ କାଳୀ କାମାରିଃ କାଳକଣ୍ଠୀ କପର୍ଦ୍ଦିନୀମ୍ ।**

-ଲିଙ୍ଗ ପୁରାଣ

ଅର୍ଥାତ୍- ଦେବୀଙ୍କୁ ସେ ଅବସ୍ଥାରେ ଦେଖି କାମ ମର୍ଦ୍ଦନ କରିଥିବା ଶିବ କାଳକଣ୍ଠୀ କପର୍ଦ୍ଦିନୀ ସୃଷ୍ଟି କରିଥିଲେ ।

## କୁଣ୍ଡଳିନୀ ଓ କାମ ବିଜ୍ଞାନ

କୁଣ୍ଡଳିନୀ ବିଜ୍ଞାନରେ ମୂଳାଧାରକୁ ଯୋନି ଓ ସହସ୍ରାରକୁ ଲିଙ୍ଗ କୁହାଯାଏ । ଏହା ସୂକ୍ଷ୍ମ ତତ୍ତ୍ଵର ଗଭୀର ଚର୍ଚ୍ଚା ଅଟେ । ଏ ବିବରଣରେ କାମକ୍ରୀଡ଼ା ଓ ଶୃଙ୍ଗାରର କାବ୍ୟମୟ ବର୍ଣ୍ଣନା କରାଯାଇଛି । କିନ୍ତୁ କ୍ରିୟା ପ୍ରସଙ୍ଗରେ ଏଭଳି କିଛି ନାହିଁ । ତନ୍ତ୍ର ଗ୍ରନ୍ଥରେ ମଦ୍ୟ, ମାଂସ, ମୀନ, ମୁଦ୍ରା ଓ ପଞ୍ଚମ ସ୍ଥାନରେ ମୈଥୁନକୁ ମଧ୍ୟ ସାଧନା ପ୍ରୟୋଜନରେ ସମ୍ମିଳିତ କରାଯାଇଛି । ଏହା ଦୁଇ ମୂଳସତ୍ତାର ସଂଯୋଗର ସଂକେତ । ଶାରୀରିକ ରତିକର୍ମ ସହିତ ଏହାର ସମ୍ବନ୍ଧ ଯୋଡ଼ାଯାଇନାହିଁ । ଏହି ସୂକ୍ଷ୍ମ ଆଧ୍ୟାତ୍ମିକ ସିଦ୍ଧାନ୍ତ ରତିକର୍ମ ଉପରେ ପ୍ରଯୁକ୍ତ ହୋଇଥାଏ, ଦାମ୍ପତ୍ୟ ଅବସ୍ଥାରେ ମଧ୍ୟ ଲାଗୁ ହୁଏ । ଉଭୟ ମଧ୍ୟରେ ସମତାର ଆଦାନ ପ୍ରଦାନର ସ୍ଥିତି ଯେତେ ବ୍ୟବସ୍ଥିତ ହେବ, ଯୁଗ୍ମ ସେତିକି ସୁଖ, ସନ୍ତୁଷ୍ଟ ଓ ସମୁନ୍ନତ ହେବେ ।

ମୂଳାଧାରରେ କୁଣ୍ଡଳିନୀ ଶକ୍ତି ଶିବ ଲିଙ୍ଗ ସହିତ ଗୁଡ଼େଇ ହୋଇ ପ୍ରସୁପ୍ତ ସର୍ପିଣୀ ପରି ପଡ଼ି ରହିଥାଏ । ସମୁନ୍ନତ ଅବସ୍ଥାରେ ଏହି ମୂଳ ଅବସ୍ଥାର ବିକାଶ ହୋଇଥାଏ । ମୂଳାଧାର ମଳମୂତ୍ର ସ୍ଥାନ ପରି ନିକୃଷ୍ଟ ସ୍ଥାନର ଊର୍ଦ୍ଧ୍ଵକୁ ଉଠି ମସ୍ତିଷ୍କର ସର୍ବୋଚ୍ଚ ସ୍ଥାନରେ ବିରାଜିତ ହୁଏ । ଛୋଟ ଶିବଲିଙ୍ଗ ମସ୍ତିଷ୍କରେ କୈଳାସ ପର୍ବତ ସମାନ ହୋଇଯାଏ । ଛୋଟ କୁଣ୍ଡ ମାନସରୋବର ରୂପ ଧାରଣ କରିବାର

ସୁଯୋଗ ପାଏ । ପ୍ରସୁପ୍ତ ସର୍ପିଣୀ ଜାଗ୍ରତ ହୋଇ ଶିବଙ୍କ କଣ୍ଠରେ ଗୁଡ଼େଇ ହୋଇଯାଏ ଓ ଶେଷନାଗ ପରି ପରାକ୍ରମୀ ରୂପ ନେଇ ଦୃଷ୍ଟିଗୋଚର ହୋଇଥାଏ । ବନ୍ଦ ଥିବା କଳିକା ପ୍ରସ୍ଫୁଟିତ ହୋଇଯାଏ । ପ୍ରସ୍ଫୁଟିତ ଶତଦଳ କମଳ ସହସ୍ରାର ରୂପେ ବିକାଶ ଲାଭ କରେ । ମୂଳାଧାରରେ ଅତି ଅଳ୍ପ ସ୍ଥାନ ଥାଏ । କିନ୍ତୁ ବ୍ରହ୍ମରନ୍ଧ୍ରର ବିସ୍ତାର ତା ଅପେକ୍ଷା ଶହେଗୁଣ ଅଧିକ ।

ସହସ୍ରାରକୁ ସ୍ୱର୍ଗଲୋକର କଳ୍ପବୃକ୍ଷ, ପ୍ରଳୟ କାଳରେ ରକ୍ଷା ପାଇଥିବା ଅକ୍ଷୟବଟ, ଗୀତାର ଉର୍ଦ୍ଧ୍ୱମୂଳ ଅଧଃଶାଖାଯୁକ୍ତ ଅଶ୍ୱତ୍ଥ ବୃକ୍ଷ, ଭଗବାନ ବୁଦ୍ଧଙ୍କୁ ମହାନ୍ କରିଥିବା ବୋଧିବୃକ୍ଷ କୁହାଯାଇପାରେ । ଏ ସମସ୍ତ ଉପମା ବ୍ରହ୍ମରନ୍ଧ୍ରରେ ନିବାସ କରୁଥିବା ବ୍ରହ୍ମବୀଜର । ଏହା ଅବିକଶିତ ଅବସ୍ଥାରେ ମନ, ବୁଦ୍ଧିର ଛୋଟକାଟିଆ ପ୍ରୟୋଜନ ପୂରଣ କରିଥାଏ ।

ଏହା ଜାଗ୍ରତ ଅବସ୍ଥାରେ ପହଞ୍ଚିବା ମାତ୍ରେ ସୂର୍ଯ୍ୟଙ୍କ ସମାନ ଦିବ୍ୟସତ୍ତାସମ୍ପନ୍ନ ହୋଇଯାଏ । ଏହାର ପ୍ରଭାବ ଯୋଗୁଁ ବ୍ୟକ୍ତି ଏବଂ ତାହାର ସମ୍ପର୍କ କ୍ଷେତ୍ର ଦିବ୍ୟ ଆଲୋକରେ ପ୍ରଭାବିତ ହୋଇଉଠେ ।

ପଦାର୍ଥ ଓ ପ୍ରାଣୀର ଧର୍ମ ହେଉଛି ଉର୍ଦ୍ଧ୍ୱଗମନ କରିବା । ତେଜ ଓ ଉତ୍ତାପର ସ୍ୱଭାବ ହେଉଛି ଉର୍ଦ୍ଧ୍ୱଗମନ କରିବା ଓ ଅଗ୍ରସର ହେବା । ପ୍ରଗତିର ଦ୍ୱାର ଅବରୁଦ୍ଧ ହେଲେ କୁଣ୍ଡଳିନୀ ଶକ୍ତି କାମୁକତାର ଛିଦ୍ର ଦେଇ ନିଜ ରାସ୍ତା ପ୍ରସ୍ତୁତ କରେ । ତେଣୁ ପତନୋନ୍ମୁଖୀ ହୁଏ । କିନ୍ତୁ ଉର୍ଦ୍ଧ୍ୱଗମନର ମାର୍ଗ ମିଳିଗଲେ, ପ୍ରଯତ୍ନକର୍ତ୍ତା ପରମ ତେଜସ୍ୱୀ ହେବା ଓ ଅନ୍ଧକାରରେ ଆଲୋକ ଉତ୍ପନ୍ନ କରିବା କ୍ଷମତା ରୂପେ ତାହାର ପ୍ରଭାବ ଦୃଷ୍ଟିଗୋଚର ହୋଇଥାଏ ।

କୁଣ୍ଡଳିନୀର ପ୍ରଚଣ୍ଡ କ୍ଷମତା ସ୍ଥୂଳ ଶରୀରରେ ଓଜସ୍, ସୂକ୍ଷ୍ମ ଶରୀରରେ ତେଜସ୍ ଓ କାରଣ ଶରୀରରେ ବର୍ଚ୍ଚସ୍ ରୂପେ ପ୍ରକଟ ଓ ପରିଲକ୍ଷିତ ହୋଇଥାଏ । ସମଗ୍ର ତେଜସ୍ୱିତା ଏହି ତିନି ଭାବରେ ଦେଖାଦେଇଥାଏ । ଏହି ଅନ୍ତଃକ୍ଷମତାର ଏକ ନଗଣ୍ୟ ଆତ୍ମପ୍ରକାଶ କାମ ବାସନା ରୂପେ ଦେଖାଦେଇପାରେ । ନିଜର ସହଯୋଗୀ ପ୍ରତି କାମୁକତା କେତେ ଆକର୍ଷଣ ଓ ଆତ୍ମଭାବ ଉତ୍ପନ୍ନ କରିଥାଏ ।

ସମ୍ଭୋଗ କର୍ମରେ ସଗସତା ଅନୁଭୂତ ହୁଏ । ସନ୍ତାନ ଉତ୍ପାଦନ ପରି ଆଶ୍ଚର୍ଯ୍ୟଜନକ ଉପଲବ୍ଧି ସମ୍ମୁଖକୁ ଆସେ । ଏକ କ୍ଷୁଦ୍ର ଇନ୍ଦ୍ରିୟ ଉପରେ ଅନ୍ତଃଚେତନାର ଆବେଶ ବିସ୍ତାରିତ ହେଲେ, ତାହାର ପ୍ରଭାବ କେତେ ଅଦ୍‌ଭୁତ ହୁଏ । ଆଖି ଖୋଲି ସବୁ ଦିଗରେ ଏହା ଦେଖା ଯାଇପାରେ । ମନୁଷ୍ୟର ଚିତ୍ତ, ଶ୍ରମ, ସମୟ, ଉପାର୍ଜନର ଅଧିକାଂଶ ଏଇ ଇଚ୍ଛାକୁ ତୃପ୍ତ କରିବା ପାଇଁ ନିଯୁକ୍ତ ହୋଇଥାଏ । ଉପଭୋଗର ପ୍ରତିକ୍ରିୟା ସନ୍ତାନୋତ୍ପାଦନର ଉତ୍ତରଦାୟିତ୍ୱ ବହନ କରିବା ରୂପେ ଦେଖାଦିଏ । ଏହା ଏକ ବୋଝ । ଏହି ପ୍ରକଟ ତଥ୍ୟ କାହାରିକୁ ଅଜଣା ନୁହେଁ । କୌଣସି ସାମର୍ଥ୍ୟକୁ ଯଦି ଉର୍ଦ୍ଧ୍ୱଗାମୀ କରାଯାଇପାରେ, ତେବେ ତାହାର ପ୍ରଭାବ ଦେବୋପମ ପରିସ୍ଥିତି ସୃଷ୍ଟି କରିପାରେ ।

ଭୌତିକ ଦୃଷ୍ଟିରୁ ଜନନେନ୍ଦ୍ରିୟକୁ କାମବାସନା ଏବଂ ରତିପ୍ରବୃତ୍ତି ନିମନ୍ତେ ଦାୟୀ କରାଯାଇ ଥାଏ । କିନ୍ତୁ ପୁରୁଷ ଓ ନାରୀର ପ୍ରଜନନ କେନ୍ଦ୍ରର ସୂତ୍ର ସଂଚାଳନ ମେରୁଦଣ୍ଡସ୍ଥିତ ସୁଷୁମ୍ନା କେନ୍ଦ୍ରରେ ହୋଇଥାଏ । ଗଭୀର ବୈଜ୍ଞାନିକ ଗବେଷଣା ପରେ ଏହି ତଥ୍ୟ ଜଣାପଡ଼ିଛି । ଏହି କେନ୍ଦ୍ର ନାଭି ସିଧାରେ ଅବସ୍ଥିତ । ହେନ୍‌ରୀ ଅସ୍‌ଲେଙ୍କ ପ୍ରଣୀତ ''ନୋଟ୍‌ସ୍ ଅନ୍ ଫିଜିଓଲଜି'' ଗ୍ରନ୍ଥରେ ଏ ସନ୍ଦର୍ଭରେ ଯଥେଷ୍ଟ ଆଲୋକପାତ କରାଯାଇଛି । ସେଥିରେ ଉଲ୍ଲେଖ ଅଛି– ମେରୁଦଣ୍ଡର ଲମ୍ବର ରିଜିଅନ୍ (ନିମ୍ନାଂଶ)ରେ ସ୍ଥିତ କେନ୍ଦ୍ର ଦ୍ୱାରା ନରନାରୀଙ୍କ ପ୍ରଜନନ ଅଙ୍ଗର ସଂକୋଚନ ଓ ନିୟନ୍ତ୍ରଣ କ୍ରିୟା ହୋଇଥାଏ । ଏ ଦୃଷ୍ଟିରୁ କେବଳ ଜନନେନ୍ଦ୍ରିୟ ହିଁ କାମୋତ୍ତେଜନାର ପ୍ରକଟୀକରଣର ମାଧ୍ୟମ ହୁଏ । ତାହାର ଉଦ୍‌ଗମ ତଥା ଉଦ୍‌ଭବ କେନ୍ଦ୍ର ସୁଷୁମ୍ନାରେ ଥିବାରୁ, ତାହା କୁଣ୍ଡଳିନୀର ଏକ କମ୍ପନ ବୋଲି ପ୍ରମାଣିତ ହୁଏ । ଏହି ପ୍ରବାହକୁ ଜନନେନ୍ଦ୍ରିୟ ଅପେକ୍ଷା ଉଚ୍ଚରେ କେନ୍ଦ୍ର ଆଡ଼କୁ ପରିଚାଳିତ କରିବାର ପ୍ରକ୍ରିୟା ହିଁ ଏହି ମହାଶକ୍ତିର ସାଧନା ରୂପେ ପ୍ରଯୁକ୍ତ ହୋଇଥାଏ ।

ନେପୋଲିୟନ୍ ହିଲ୍ ନିଜ ପୁସ୍ତକ ''ଥିଙ୍କ୍ ଆଣ୍ଡ ଗ୍ରୋ ରିଚ୍''ରେ କାମ ଶକ୍ତି ବିଷୟରେ ଗୁରୁତ୍ୱପୂର୍ଣ୍ଣ ଆଲୋକପାତ କରିଛନ୍ତି । ସେକ୍‌ସ ଏନର୍ଜି ମସ୍ତିଷ୍କ

ଓ ଶରୀରକୁ ସମାନ ଭାବରେ ପ୍ରଭାବିତ କରିଥାଏ ବୋଲି ସେ ଲେଖିଛନ୍ତି । ଏହା ମନୁଷ୍ୟକୁ ପ୍ରଗତି ପଥରେ ଅଗ୍ରସର ହେବା ପାଇଁ ପ୍ରେରଣା ଦେଇଥାଏ ।

ସାଧାରଣତଃ ଏହାର ଉତ୍ତେଜନା ଇନ୍ଦ୍ରିୟ ମନୋରଞ୍ଜନ ରୂପେ ସମାପ୍ତ ହୋଇଥାଏ । ମାଟି ଉପରେ ଥିବା ପାଣି ବାଷ୍ପରେ ପରିଣତ ହୋଇ ଏମିତି ଉଡ଼ି ଯାଇଥାଏ । କିନ୍ତୁ ଏହାର ବିବେକପୂର୍ଣ୍ଣ ଉପଯୋଗ କରାଗଲେ, ବାଷ୍ପ ଦ୍ୱାରା ଖାଦ୍ୟ ରାନ୍ଧିବାଠାରୁ ଆରମ୍ଭ କରି ରେଳ ଇଞ୍ଜିନ ଚଳାଇବା ପର୍ଯ୍ୟନ୍ତ ଅସଂଖ୍ୟ ଉପଯୋଗୀ କାମ କରାଯାଇପାରେ । କାମ ଶକ୍ତିର ଉଚ୍ଚସ୍ତରୀୟ ସୃଜନାତ୍ମକ ପ୍ରୟୋଜନ ଅନେକ । କଳାତ୍ମକ କାର୍ଯ୍ୟରେ, କାବ୍ୟ ପରିକଳ୍ପନା, ସମ୍ବେଦନାରେ, ଦୟା, କରୁଣା ଓ ଉଦାର ଆତ୍ମୀୟତାକୁ ସାକାର କରୁଥିବା ସେବାସାଧନାରେ, ଏକାଗ୍ର ତନ୍ମୟତା ଦ୍ୱାରା ସମ୍ଭବ ହୋଇଥିବା ଗବେଷଣା ରୂପକ ପ୍ରଚଣ୍ଡ ପରାକ୍ରମରେ, ଗହନ ଆଧ୍ୟାତ୍ମିକ କ୍ଷେତ୍ରରୁ ଉଦ୍‌ଭୂତ ଶ୍ରଦ୍ଧା ଭକ୍ତିରେ ଏହାକୁ ନିୟୋଜନ କରାଯାଇପାରେ ।

କାମଇଚ୍ଛା ଏକ ଆଧ୍ୟାତ୍ମିକ କ୍ଷୁଧା ଅଟେ । ଏହାକୁ ଦୂର କରାଯାଇ ନ ପାରେ । ନିରୋଧ କଲେ ଏହା ଅତ୍ୟଧିକ ଉଗ୍ର ହୋଇପଡ଼େ । ପ୍ରବାହମାନ ଜଳକୁ ବାଧା ଦେଲେ ତାହା ଠେଲି ଦେବାର ଏକ ନୂତନ ସାମର୍ଥ୍ୟ ଉତ୍ପନ୍ନ କରେ । ଆକାଶରେ ଗତି କରୁଥିବା ବନ୍ଧୁକର ଗୁଳି ଆପେ ଶାନ୍ତ ହେବାର ଅବସ୍ଥାକୁ ଆସିବା ପୂର୍ବରୁ ଯେଉଁଠାରେ ବାଧାପ୍ରାପ୍ତ ହେବ, ସେଠାରେ ଆଘାତ କରି ଛିଦ୍ର କରିଦେବ । କାମ ଶକ୍ତିକୁ ବଳ ପ୍ରୟୋଗ କରି ବାଧାଦେଲେ କେତେ ପ୍ରକାର ଶାରୀରିକ ଓ ମାନସିକ ଉପଦ୍ରବ ଦେଖାଦେଇଥାଏ । ଫ୍ରୟେଡ୍‌ଙ୍କ ଠାରୁ ଆରମ୍ଭ କରି ଅଧୁନାତନ ମନୋବୈଜ୍ଞାନିକଙ୍କ ପର୍ଯ୍ୟନ୍ତ ସମସ୍ତେ ଏ ତଥ୍ୟ ଉପରେ ନିଜସ୍ୱ ଶୈଳୀରେ ଆଲୋକପାତ କରିଛନ୍ତି । ତାହାକୁ ସୃଜନାତ୍ମକ କାର୍ଯ୍ୟରେ ନିୟୋଜନ କରିବା ସକାଶେ ପରାମର୍ଶ ଦେଇଛନ୍ତି । ଗୋଟିଏ ଦିଗରୁ ମନ ଛାଡ଼ି ଯାଇ ଅନ୍ୟ ଦିଗରେ ଗତି କଲେ, ଗୋଟିଏ ବିଷୟର ମହତ୍ତ୍ୱକୁ ହେୟ ମନେ କରି ଅନ୍ୟ ବିଷୟର ଗରିମା ଉପରେ ବିଶ୍ୱାସ ସ୍ଥାପନ କରାଗଲେ, ଆକାଂକ୍ଷା ଓ

ଅଭିରୁଚିର ପ୍ରବାହକୁ ଅନ୍ୟ ଦିଗରେ ପରିଚାଳିତ କରିବା କଠିନ ହୁଏ ନାହିଁ । ଏହା ହିଁ ବ୍ରହ୍ମଚର୍ଯ୍ୟର ବୈଜ୍ଞାନିକ ସ୍ୱରୂପ । ଅତୃପ୍ତି ଜନିତ ଅଶାନ୍ତିରୁ ରକ୍ଷା ପାଇବା ତଥା କ୍ଷମତାର ସଦୁପଯୋଗ କରି ସତ୍ପରିଣାମ ଲାଭ କରିବାର ଗୋଟିଏ ଉପାୟ ହେଉଛି– କାମେଚ୍ଛା ପ୍ରବୃତ୍ତିକୁ ସୃଜନାତ୍ମକ ଦିଗରେ ନିୟୋଜନ କରିବା ।

କଳାତ୍ମକ ପ୍ରୟୋଜନରେ ସଂଲଗ୍ନ ହେଲେ ତାହାର ଭୌତିକ ଉପକାର ମିଳିପାରେ । ଅଧ୍ୟାତ୍ମ କ୍ଷେତ୍ରରେ ଭାବସମ୍ବେଦନା ଉଦ୍ଦେଶ୍ୟରେ ତାହାକୁ ଭକ୍ତିଭାବନା ରୂପେ ତଥା ପ୍ରବଳ ପୁରୁଷାର୍ଥ ପରି ତାହାକୁ ତପୋମୟ ଯୋଗସାଧନାରେ ପ୍ରଯୁକ୍ତ କରାଯାଇପାରେ । କୁଣ୍ଡଳିନୀ ଜାଗରଣ ପ୍ରକ୍ରିୟାରେ ସମନ୍ୱିତ ପଦ୍ଧତି ରୂପେ ଉଭୟର ସମନ୍ୱୟ କରାଯାଇପାରେ । ସହସ୍ରାର ଚକ୍ର ଭକ୍ତିଭାବନାର ଓ ମୂଳାଧାର ଚକ୍ର ପ୍ରାଣ ସଂସ୍ଥାନର କେନ୍ଦ୍ର ଅଟେ । କୁଣ୍ଡଳିନୀ ଜାଗରଣ ପ୍ରକ୍ରିୟା ଅନୁସରଣ ଦ୍ୱାରା ଉଭୟର ପ୍ରସୁପ୍ତ ଅବସ୍ଥାକୁ ସମାପ୍ତ କରି ସାହସିକ ସମ୍ବେଦନା ଜାତ କରିବା ସମ୍ଭବ ହୋଇଥାଏ ।

ଧର୍ମ, ଅର୍ଥ, କାମ ଓ ମୋକ୍ଷ– ଏ ଚାରିଟି ଜୀବନରେ ପ୍ରମୁଖ ପ୍ରୟୋଜନ । ସାଧାରଣତଃ ରତିକର୍ମକୁ କାମର ଅର୍ଥ ବୋଲି ମନେ କରାଯାଏ । ଦୁଇ ପୂରକ ତତ୍ତ୍ୱର ମିଳନ ଦ୍ୱାରା ଏହି ରସାନୁଭୂତି ସମ୍ଭବ ହୁଏ । ଋଣ ଓ ଧନ ବିଦ୍ୟୁତ୍ ପ୍ରବାହ ମିଶିଗଲେ ଗତି ଉତ୍ପନ୍ନ ହୋଇଥାଏ । ରୟି ଓ ପ୍ରାଣ ତତ୍ତ୍ୱର ମିଳନ ଦ୍ୱାରା ସଂସାରରେ ପ୍ରାଣୀ ଉତ୍ପାଦନ ସମ୍ଭବ ହୁଏ । ପ୍ରକୃତି ଓ ପୁରୁଷ ପରି ନର ଓ ନାରୀକୁ ପରସ୍ପରର ପୂରକ ମନେ କରାଯାଏ । ମାନବୀୟ ସତ୍ତାରେ ମଧ୍ୟ ଦୁଇ ପୂରକ ତତ୍ତ୍ୱ କାମ କରିଥାନ୍ତି । ଏହାକୁ ନର ଓ ନାରୀର ପ୍ରତିନିଧି ମନେ କରାଯାଏ । ମୂଳାଧାରରେ ଅବସ୍ଥିତ କୁଣ୍ଡଳିନୀ ହେଉଛି ନାରୀ ସତ୍ତା ଓ ନର ତତ୍ତ୍ୱ ହେଉଛି ସହସ୍ରାର ସ୍ଥିତ ବ୍ରହ୍ମରନ୍ଧ୍ର । ଏହାକୁ ଶିବ ଓ ଶକ୍ତି କୁହାଯାଇଥାଏ । ଏହାର ମିଳନ ହିଁ କୁଣ୍ଡଳିନୀ ଜାଗରଣର ଲକ୍ଷ୍ୟ । ଏହି ସଂଯୋଗରୁ ଉତ୍ପନ୍ନ ଦିବ୍ୟଧାରାକୁ ଭୌତିକ କ୍ଷେତ୍ରରେ ଋଦ୍ଧିସିଦ୍ଧି ଓ ଆତ୍ମିକ କ୍ଷେତ୍ରରେ ସ୍ୱର୍ଗ, ମୁକ୍ତି କୁହାଯାଇ ଥାଏ । ଏହା ହେଉଛି ଆତ୍ମସାକ୍ଷାତ୍କାର ଓ ବ୍ରହ୍ମ ନିର୍ବାଣର ଲକ୍ଷ୍ୟ ।

ଭଗବାନ କାମ ରୂପରେ ଜୀବନରେ ଅବତରିତ ହେବା ପାଇଁ ଅଥର୍ବ ବେଦରେ ପ୍ରାର୍ଥନା କରାଯାଇଛି–

**ଯାସ୍ତେ ଶିବାସ୍ତନ୍ୱଃ କାମ ଭଦ୍ରାୟାଭିଃ ସତ୍ୟଂ ଭବତି ଯଦ୍ ବୃଣୀଷେ**
**ତାଭିଷ୍ଟ୍ୱମସ୍ମାଁ ଅଭି ସଂବିଶସ୍ୱାନ୍ୟତ୍ର ପାପୀ ରପବେଶୟା ଧିୟଃ ।**

–ଅଥର୍ବ ବେଦ

ଅର୍ଥାତ୍– ହେ ପରମେଶ୍ୱର ! ଆପଣଙ୍କର କାମ ରୂପ ମଧ୍ୟ ଶ୍ରେଷ୍ଠ ଓ କଲ୍ୟାଣକାରକ ଅଟେ । ତାହାର ଚୟନ ଅସତ୍ୟ ନୁହେଁ । ଆପଣ କାମ ରୂପରେ ଆମ ଭିତରେ ପ୍ରବେଶ କରନ୍ତୁ । ପାପ ବୁଦ୍ଧି ଦୂର କରାଇ ଆମକୁ ନିଷ୍ପାପ ଉଲ୍ଲାସ ଦିଗରେ ନେଇଯାନ୍ତୁ ।

କୁଣ୍ଡଳିନୀ ମହାଶକ୍ତିର ପ୍ରକୃତି ନିରୂପଣ କରି ଶାସ୍ତ୍ରକାରଗଣ 'କାମବୀଜ' ଓ 'କାମକଳା' ଉଭୟ ଶବ୍ଦର ପ୍ରୟୋଗ କରିଛନ୍ତି । ଏଠାରେ ଏ ଶବ୍ଦକୁ କାମୁକତା, କାମକ୍ରୀଡ଼ା ଓ କାମଶାସ୍ତ୍ର ପରି ତୁଚ୍ଛ ଅର୍ଥବୋଧକ ମନେ କରାଯାଇଛି । ଏହି ଶକ୍ତି ଉଲ୍ଲାସ ଓ ଉତ୍ସାହ ଉତ୍ପନ୍ନ କରେ । ଏହା ଶରୀର ଓ ମନର ଉଭୟ ପକ୍ଷୀୟ ଅଗ୍ରଗାମୀ ସ୍ଫୁରଣ । ଏହା ମୂଳ ପ୍ରକୃତି । ଅନ୍ୟଟି ପୂରକ ପ୍ରକୃତି । ମୂଳାଧାରକୁ କାମବୀଜ କୁହାଯାଏ ଓ ସହସ୍ରାରକୁ 'ଜ୍ଞାନବୀଜ' । ଉଭୟର ସମନ୍ୱୟରେ ବିବେକଯୁକ୍ତ କ୍ରିୟାର ଉତ୍ପତ୍ତି ହୁଏ । ଜୀବନର ସର୍ବତୋମୁଖୀ ବିକାଶ ଏହା ଉପରେ ନିର୍ଭର କରେ । କୁଣ୍ଡଳିନୀ ସାଧନାରେ ଏହି ସୁଯୋଗ ଓ ସଂଯୋଗର ବ୍ୟବସ୍ଥା ସମାହିତ ।

ପ୍ରତ୍ୟେକ ଶରୀରରେ ନର ଓ ନାରୀ ଉଭୟ ତତ୍ତ୍ୱ ବିଦ୍ୟମାନ । ଶରୀରଶାସ୍ତ୍ରୀଙ୍କ ମତ ଅନୁସାରେ ପ୍ରତ୍ୟେକ ପ୍ରାଣୀଠାରେ ଉଭୟ ପକ୍ଷୀୟ ସତ୍ତା ରହିଛି । ଏହା ଭିତରୁ ଯେଉଁଟି ଉତ୍ପନ୍ନ ହୁଏ, ତଦନୁସାରେ ଲିଙ୍ଗ ପ୍ରକୃତି ଗଠିତ ହୁଏ । ସଂକଳ୍ପ ସାହାଯ୍ୟରେ ଏ ପ୍ରକୃତିକୁ ବଦଳାଇ ଦିଆଯାଇପାରେ । ଛୋଟ ପ୍ରାଣୀଙ୍କଠାରେ ଉଭୟଲିଙ୍ଗୀ କ୍ଷମତା ଥାଏ । ସେମାନେ ଆବଶ୍ୟକତା ଅନୁସାରେ ଗୋଟିଏ ଶରୀରରେ ଦୁଇ ପ୍ରକାର ଉଦ୍ଦେଶ୍ୟ ପୂରଣ କରିଥାନ୍ତି ।

ମଣିଷ ସମାଜରେ କେତେକଙ୍କ ଆକୃତି ଏକ ନିର୍ଦ୍ଦିଷ୍ଟ ବର୍ଗର ହୋଇଥିଲେ ସୁଦ୍ଧା ସେମାନଙ୍କ ପ୍ରକୃତି ଅନ୍ୟ ବର୍ଗ ଭଳି ହୋଇଥାଏ । ନର ନାରୀର ଓ ନାରୀ ନରର ଭୂମିକା ଗ୍ରହଣ କରିବା କେବେକେବେ ଦେଖାଦେଇଥାଏ । ଏହା ବ୍ୟତୀତ

ଲିଙ୍ଗ ପରିବର୍ତ୍ତନର ଘଟଣା ମଧ୍ୟ ଘଟିଥାଏ । ଶଲ୍ୟ କ୍ରିୟାର ବିକାଶ ସଙ୍ଗେ ସଙ୍ଗେ ଏବେ ଏ ପ୍ରକାର ଓଲଟପାଲଟ ହେବା ଖବର ସଂସାରର ନାନାସ୍ଥାନରୁ ମିଳିଥାଏ । ଅମୁକ ପୁରୁଷ ନାରୀ ହୋଇଗଲେ ବା ଅମୁକ ନାରୀ ନର ରୂପରେ ନିଜ ଘରକରଣା କଲା ବୋଲି ସମ୍ବାଦ ମିଳିଥାଏ ।

ଉଭୟଙ୍କଠାରେ ଗୋଟିଏ ତତ୍ତ୍ୱ ପ୍ରଧାନ ରୂପେ ଥିବାରୁ କାମ ତ ଚଳିଯାଏ, କିନ୍ତୁ ତାହା ଏକାଙ୍ଗୀ ହୋଇ ରହିଯାଏ । ନାରୀ ସୁଲଭର କୋମଳତା, ସହୃଦୟତା, କଳାକାରିତା ପରି ଭାବାତ୍ମକ ତତ୍ତ୍ୱ ନରଠାରେ ଯେତିକି ଅଭାବ ହେବ, ସେ ସେତିକି ପରିମାଣରେ କଠୋର ଓ ନିଷ୍ଠୁର ହୋଇଯିବ ଏବଂ ନିଜର ବଳିଷ୍ଠତା ଓ ମନସ୍ୱିତା-ପକ୍ଷ-ସାହାଯ୍ୟରେ କ୍ରୂର ଏବଂ କର୍କଶ ହୋଇ ନିଜ ପାଇଁ ତଥା ଅନ୍ୟମାନଙ୍କ ପାଇଁ କେବଳ ଅଶାନ୍ତି ଉତ୍ପନ୍ନ କରିବ । ନାରୀଠାରେ ପୌରୁଷର ଅଭାବ ଥିଲେ ସେ ଆତ୍ମହୀନତା ଗ୍ରସ୍ତ ହୋଇ ଅନାବଶ୍ୟକ ସଂକୋଚରେ ବୁଡ଼ି କାଠ କଣ୍ଢେଇ ଭଳି ହୋଇଯିବ । ତେଣୁ ଉଭୟ ପକ୍ଷରେ ସନ୍ତୁଳିତ ମାତ୍ରାରେ ରୟି ଓ ପ୍ରାଣ ତତ୍ତ୍ୱର ପରିସ୍ଥିତି ଆବଶ୍ୟକ । କେହିହେଲେ ପୂର୍ଣ୍ଣ ରୂପେ ଏକାଙ୍ଗୀ ହୋଇ ନ ରହୁ । ବାହ୍ୟ ଜୀବନରେ ଯେପରି ନର ଓ ନାରୀ ପରସ୍ପରର ସହଯୋଗ କରିଥାନ୍ତି, ଅନ୍ତଃକ୍ଷେତ୍ରରେ ସେହିପରି ଉଭୟ ତତ୍ତ୍ୱର ବିକାଶ ହେବା ଆବଶ୍ୟକ । ଏପରି ହୋଇପାରିଲେ ଏକ ପୂର୍ଣ୍ଣ ବ୍ୟକ୍ତିତ୍ୱର ପରିପ୍ରକାଶ ହୋଇପାରିବ । କୁଣ୍ଡଳିନୀ ଜାଗରଣ ଦ୍ୱାରା ଉଭୟ ପକ୍ଷୀୟ ବିକାଶର ପୃଷ୍ଠଭୂମି ପ୍ରସ୍ତୁତ ହୋଇଥାଏ ।

ମୂଳାଧାର ଚକ୍ରରେ କାମଶକ୍ତିକୁ ସ୍ଫୂର୍ତ୍ତି, ଉତ୍ସାହ ଓ ସରସତାର ଉତ୍ପାଦନ ରୂପେ ମନେ କରାଯାଏ । ତେଣୁ ତାହାକୁ କାମସଂସ୍ଥାନ କୁହାଯାଏ । ଅନ୍ୟତ୍ର ଏହାକୁ ଯୋନି ସଂଜ୍ଞା ଦିଆଯାଇଛି । ଜନନେନ୍ଦ୍ରିୟର ଆକାରର ଆଧାର ଉପରେ ଏପରି ନାମକରଣ ହୋଇନାହିଁ, ବରଂ ସେ କେନ୍ଦ୍ରରେ ସନ୍ନିହିତ 'ରୟି' ଶକ୍ତି ପ୍ରତି ଦୃଷ୍ଟି ଦେଇ ଏପରି ନାମକରଣ ହୋଇଛି ।

**ଅପାନେ ମୂଳ କନ୍ଦାଖ୍ୟଂ କାମ ରୂପଂ ଚ ତଜ୍ଜ ଗୁଃ ।**
**ତଦେବ ବହ୍ନିକୁଣ୍ଡସ୍ୟାତ୍ ତତ୍ତ୍ୱ କୁଣ୍ଡଳିନୀ ତଥା ।।**

–ଯୋଗରାଜୋପିନିଷଦ

ଅର୍ଥାତ୍– ମୂଳାଧାର ଚକ୍ରରେ କନ୍ଦ ଅଛି । ତାହାକୁ କାମରୂପ, କାମବୀଜ, ଅଗ୍ନିକୁଣ୍ଡ କୁହାଯାଏ । ଏହା କୁଣ୍ଡଳିନୀର ସ୍ଥାନ ।

**ଦେବୀ ହ୍ୟେକାଽଗ୍ରାସୀତ୍ ସୈବ ଜଗଦଣ୍ଡମସୃଜତ୍ ।**

**କାମକଳେତି ବିଜ୍ଞାୟତେ ଶୃଙ୍ଗାରକଳେତି ବିଜ୍ଞାୟତେ ।।**

–ବୃହଦ୍ବୃଚୋପନିଷଦ୍

ଅର୍ଥାତ୍– ସେହି ଦିବ୍ୟଶକ୍ତିରୁ ଏହି ଜଗତ୍ ମଣ୍ଡଳ ସୃଷ୍ଟି ହୋଇଛି । ସୃଷ୍ଟି ପୂର୍ବରୁ ତାହା ଥିଲା । ତାହା କାମକଳା । ଏହାକୁ ସୌନ୍ଦର୍ଯ୍ୟ କଳା ମଧ୍ୟ କହିଥାନ୍ତି ।

**ଯତ୍ତଦଗୁହ୍ୟମିତି ପ୍ରୋକ୍ତଂ ଦେବଯୋନିସ୍ତୁ ସୋଚ୍ୟତେ ।**

**ଅସ୍ୟାଂ ଯୋ ଜାୟତେ ବହ୍ନି କଲ୍ୟାଣପ୍ରଦ ଉଚ୍ୟତେ ।।**

–କାତ୍ୟାୟନ ସ୍ମୃତି

ଅର୍ଥାତ୍– ଗୁହ୍ୟସ୍ଥାନରେ ଦେବଯୋନି ରହିଛି । ସେଠାରୁ ଯେଉଁ ଅଗ୍ନି ଉତ୍ପନ୍ନ ହୁଏ, ତାହାକୁ ପରମକଲ୍ୟାଣକାରୀ ମନେ କରିବା ଉଚିତ ।

**କାମୀକଳାଂ କାମରୂପାଂ ଚିକିତ୍ୱା ନରୋ ।**

**ଜାୟତେ କାମ ରୂପଶ୍ଚ କାମଃ ।।**

–ତ୍ରିପୁରୋପନିଷଦ୍

ଅର୍ଥାତ୍– ସେ ମହାଶକ୍ତି କାମରୂପ ଅଟନ୍ତି । ତାହାକୁ କାମକଳା କୁହାଯାଏ । ଯେଉଁ ବ୍ୟକ୍ତି ତାଙ୍କର ବାସନା କରନ୍ତି, ସେ କାମରୂପ ହୋଇଯାନ୍ତି । ତାଙ୍କର କାମନା ଫଳବତୀ ହୁଏ ।

କୁଣ୍ଡଳିନୀ ବିଜ୍ଞାନରେ ସହସ୍ରାରକୁ ମହାଲିଙ୍ଗ ସଂଜ୍ଞା ଦିଆଯାଇଛି । ଏଠାରେ ଜନନେନ୍ଦ୍ରିୟର ଆକାର ପ୍ରତି ସଂକେତ କରାଯାଇ ନାହିଁ, ବରଂ ସେହି କେନ୍ଦ୍ରରେ ସନ୍ନିହିତ ପ୍ରାଣ ପୌରୁଷ ପ୍ରତି ସଂକେତ କରାଯାଇଛି ।

କାମବୀଜ ଓ ଜ୍ଞାନବୀଜର ମିଳନରେ ଯେଉଁ ଆନନ୍ଦମୟ ଓ ପରମକଲ୍ୟାଣକର ଭୂମିକା ପ୍ରସ୍ତୁତ ହୁଏ, ସେଥିରେ ମୂଳାଧାର ଓ ସହସ୍ରାର ଚକ୍ରର ମିଳନ ଓ ସଂଯୋଗକୁ ଆଧାର ମନେ କରାଯାଇଛି । ଏହି ମିଳନକୁ

ସାଧନାର ସିଦ୍ଧି କୁହାଯାଏ । ଏ ଅବସ୍ଥାକୁ ଦିବ୍ୟ ମୈଥୁନର ସଂଜ୍ଞା ପ୍ରଦାନ କରାଯାଇଛି ।

**ସହସ୍ରାରୋ ପରବିନ୍ଦୌ କୁଣ୍ଡଲ୍ୟା ମେଳନଂ ଶିବେ ।**
**ମୈଥୁନଂ ଶୟନଂ ଦିବ୍ୟଂ ଯତୀନାଂ ପରିକୀର୍ତ୍ତିତମ୍ ।।**

–ଯୋଗିନୀ ତନ୍ତ୍ର

ଅର୍ଥାତ୍– ହେ ପାର୍ବତୀ– ସହସ୍ରାରରେ ମୂଳାଧାର ଓ କୁଣ୍ଡଳିନୀର ଯେଉଁ ମିଳନ ହୁଏ, ତାହାକୁ ଯୋଗୀଗଣ ଦିବ୍ୟ ମୈଥୁନ କହନ୍ତି ।

**ପରଶକ୍ତ୍ୟାତ୍ମମିଥୁନ ସଂଯୋଗାନନ୍ଦ ନିର୍ଜରାଃ ।**
**ମୁକ୍ତାତ୍ମମିଥୁନଂତତ୍ ସ୍ୟାଦିତରଂ ସ୍ତ୍ରୀ ନିବେଷକା ।।**

–ତନ୍ତ୍ରସାର

ଅର୍ଥାତ୍– ଆତ୍ମାକୁ, ପରମାତ୍ମାଙ୍କୁ ପ୍ରଗାଢ଼ ଆଲିଙ୍ଗନରେ ଆବଦ୍ଧ କରି ପରମରସର ଆସ୍ୱାଦନ କରିବା ଯତିମାନଙ୍କର ମୈଥୁନ ଅଟେ ।

**ସୁଷୁମ୍ନା ଶକ୍ତି ସୁଦ୍ଦ୍ରଷ୍ଟା ଜୀବୋଽୟଂ ତୁ ପରଃ ଶିବଃ ।**
**ତୟୋସ୍ତୁ ସଂଗମେ ଦେବୈଃ ସୁରତଂ ନାମ କୀର୍ତ୍ତିତମ୍ ।**–ତନ୍ତ୍ରସାର

ଅର୍ଥାତ୍– ସୁଷୁମ୍ନା ଶକ୍ତି ଓ ବ୍ରହ୍ମରନ୍ଧ୍ର ଶିବ ଅଟନ୍ତି । ଉଭୟଙ୍କର ସମାଗମକୁ ମୈଥୁନ କୁହାଯାଏ ।

ଏହି ସଂଯୋଗ ଆତ୍ମା ଓ ପରମାତ୍ମାଙ୍କ ମିଳନ, ଏକାକାର ହେବାର ସ୍ଥିତି ଉତ୍ପନ୍ନ କରେ । ଜୀବକୁ ଯୋନି ଓ ବ୍ରହ୍ମକୁ ବୀର୍ଯ୍ୟ ସଂଜ୍ଞା ଦେଇ, ତାହାର ସଂଯୋଗକୁ ପରମାନନ୍ଦଦାୟକ କୁହାଯାଇଛି ।

**ଏଷ ବୀଜୋ ଭବାନ୍ ବୀଜମହଂ ଯୋନିଃ ସନାତନଃ ।** –ବାୟୁ ପୁରାଣ

ଅର୍ଥାତ୍– ଜୀବ ବ୍ରହ୍ମାଙ୍କୁ କହିଲା, ''ଆପଣ ବୀଜ ଅଟନ୍ତି । ମୁଁ ଯୋନି ଅଟେ । ସନାତନ ରୂପେ ଏହି କ୍ରମ ଚାଲି ଆସୁଛି ।''

ଏ ସନ୍ଦର୍ଭରେ ଶିବ ଓ ଶକ୍ତିଙ୍କ ସଂଯୋଗର ରୂପକ ଦିଆଯାଇଥାଏ । ଶକ୍ତିକୁ ରଜ ଓ ଶିବଙ୍କୁ ବିନ୍ଦୁର ଉପମା ଦିଆଯାଇଛି । ଉଭୟଙ୍କ ମିଳନ ଜନିତ ମହତ୍ତ୍ୱପୂର୍ଣ୍ଣ ସତ୍‌ପରିଣାମ ବିଷୟରେ ଉଲ୍ଲେଖ ରହିଛି ।

**ବିନ୍ଦୁଃ ଶିବୋ ରଜଃ ଶକ୍ତିଶ୍ଚନ୍ଦ୍ରୋବିନ୍ଦୁ ରଜୋରବିଃ ।**

**ଅନୟୋଃ ସଂଗମାଦେବ ପ୍ରାପ୍ୟତେ ପରମଂ ପଦମ୍ ।''**

**–ଗୋରକ୍ଷ ପଦ୍ଧତି**

ଅର୍ଥାତ୍– ବିନ୍ଦୁ ଶିବ ଓ ରଜ ଶକ୍ତି ଅଟନ୍ତି । ଏହା ହିଁ ଚନ୍ଦ୍ର ଓ ସୂର୍ଯ୍ୟ । ଏମାନଙ୍କର ସଂଯୋଗ ହେଲେ ପରମପଦ ମିଳିଥାଏ ।

**ବିନ୍ଦୁଃ ଶିବୋ ରଜଃ ଶକ୍ତିରୁଭୟୋର୍ମିଳନାତ୍ ସ୍ୱୟମ୍ ।**

–ଶିବ ସଂହିତା– ୧/୧୦୦

ଅର୍ଥାତ୍– ବିନ୍ଦୁ ଶିବ ରୂପ ଓ ରଜ ଶକ୍ତି ରୂପ । ଉଭୟର ମିଳନ ସ୍ୱୟଂ ମହାଶକ୍ତିର ସୃଷ୍ଟି ଅଟେ ।

**ଯୋନିର୍ବେଦୀ ଉମାଦେବୀ ଲିଙ୍ଗପୀଠ ମହେଶ୍ୱର । – ଲିଙ୍ଗ ପୁରାଣ**

ଯୋନି ବେଦୀ ଉମା ଏବଂ ଲିଙ୍ଗ ପୀଠ ମହେଶ୍ୱର ଅଟନ୍ତି ।

**ଜାତବେଦାଃ ସ୍ୱୟଂ ରୁଦ୍ରଃ ସ୍ୱାହା ଶର୍ବାର୍ଦ୍ଧ କାମିନୀ ।**

**ପୁରୁଷାଖ୍ୟୋ ମନୁଃ ଶମ୍ଭୁଃ ଶତରୂପା ଶିବପ୍ରିୟା ।।**

–ଲିଙ୍ଗ ପୁରାଣ

ଅର୍ଥାତ୍– ଜାତବେଦା ଅଗ୍ନି ସ୍ୱୟଂ ରୁଦ୍ର ଅଟନ୍ତି ଓ ସ୍ୱାହା ଅଗ୍ନି ମହାଶକ୍ତି ଅଟନ୍ତି । ଉତ୍ପାଦକ ପରମ ପୁରୁଷ ଶିବ ଅଟନ୍ତି । ଶ୍ରେଷ୍ଠ ଉତ୍ପାଦନକାରିଣୀ ଶତରୂପୀ ଏବଂ ଶିବା ଅଟନ୍ତି ।

**ଅହଂ ବିନ୍ଦୁ ରଜଃ ଶକ୍ତିରୁଭୟୋର୍ମେଳନଂ ଯଦା ।**

**ଯୋଗିନାଂ ସାଧନାବସ୍ଥା ଭବେତ୍ ଦିବ୍ୟଂ ବପୁସ୍ତଦା ।।**

–ଶିବ ସଂହିତା ୪/୮୭

ଅର୍ଥାତ୍– ଶିବ ରୂପୀ ବିନ୍ଦୁ, ଶକ୍ତି ରୂପା ରଜ ଉଭୟଙ୍କର ମିଳନ ହେଲେ ଯୋଗସାଧକ ଦିବ୍ୟତା ଲାଭ କରେ ।

ବ୍ରହ୍ମର ପ୍ରତ୍ୟକ୍ଷ ରୂପ ପ୍ରକୃତି ଓ ଅପ୍ରତ୍ୟକ୍ଷ ଅଂଶ ପୁରୁଷ ଅଟେ । ଉଭୟଙ୍କ ମିଳନରେ ଦ୍ୱୈତ ଅଦ୍ୱୈତରେ ବିଲୀନ ହୋଇଯାଏ । ଶରୀରରେ ଥିବା ଦୁଇ

ଚେତନ ଧାରାକୁ ରୟି ଓ ପ୍ରାଣ କୁହାଯାଏ । ଏହାର ମିଳନ ଓ ସଂଯୋଗରେ ସାଧାରଣ ପ୍ରାଣୀକୁ ଯେଉଁ ବିଷୟାନନ୍ଦ ମିଳେ, ତାହାକୁ ପ୍ରତ୍ୟକ୍ଷ ଜଗତର ସର୍ବଶ୍ରେଷ୍ଠ ସୁଖଦ ଅନୁଭୂତି କୁହାଯାଏ । ଋଣ ଓ ଧନ ବିଦ୍ୟୁତ୍‌ର ମିଳନ ଦ୍ୱାରା ଅଗ୍ନିକଣା ଉତ୍ପନ୍ନ ହୁଏ ଓ ଶକ୍ତିଧାରା ପ୍ରବାହିତ ହୁଏ । ପୁରୁଷ ଏକକର ଦୂରତ୍ୱ ସମାପ୍ତ ହୋଇଗଲେ ସରସତା ଓ ଦୃଢ଼ତାର ଅନୁଭୂତି ପ୍ରାପ୍ତ ହୋଇଥାଏ । ଚେତନାର ଉଚ୍ଚସ୍ତରୀୟ ଏକକ ମୂଳାଧାର ଓ ସହସ୍ରାର ରୂପେ ଅଲଗା ହୋଇଥାଆନ୍ତି । ସେପର୍ଯ୍ୟନ୍ତ ଅନ୍ଧକାର, ନୀରସ ଓ ଗତିହୀନ ସ୍ଥିତି ଥାଏ । ମିଳନର ଫଳ ସଂପଦ ଓ ବିଭୂତି ରୂପେ, ଋଦ୍ଧି ଓ ସିଦ୍ଧି ରୂପେ ସହଜରେ ଦେଖାଯାଇଥାଏ । ଏହି ଉପଲବ୍ଧିର ଅନୁଭୂତିରେ ଆତ୍ମା ଏବଂ ପରମାତ୍ମାଙ୍କ ମିଳନ ହୋଇଥାଏ । ତାହାର ସମ୍ବେଦନା ବ୍ରହ୍ମାନନ୍ଦ ରୂପେ ଅନୁଭୂତ ହୁଏ । ଏହି ଆନନ୍ଦ ବିଷୟାନନ୍ଦ ତୁଳନାରେ ଅସଂଖ୍ୟ ଗୁଣ ଉଚ୍ଚତର ବୋଲି ମନେ କରାଯାଏ ।

ଶିବ ପାର୍ବତୀଙ୍କ ବିବାହ ଫଳରେ ଦୁଇ ପୁତ୍ର ଜନ୍ମ ହେଲେ । ଜଣକର ନାମ ଗଣେଶ ଓ ଅନ୍ୟ ଜଣକର ନାମ କାର୍ତ୍ତିକେୟ । ଗଣେଶଙ୍କୁ ପ୍ରଜ୍ଞାର ଦେବତା କୁହାଯାଏ ଓ କାର୍ତ୍ତିକେୟଙ୍କୁ ଶକ୍ତିର ଦେବତା । ଦୁର୍ଦାନ୍ତ, ଦସ୍ୟୁ, ଅସୁରଙ୍କୁ ନିରସ୍ତ କରିବା ଉଦ୍ଦେଶ୍ୟରେ କାର୍ତ୍ତିକେୟଙ୍କର ଅବତରଣ ହୋଇଥିଲା । ତାଙ୍କର ପରାକ୍ରମ ଦେବ ସମାଜର ପରିତ୍ରାଣ କରିଥିଲା । ଗଣେଶ ମାଂସ ପିଣ୍ଡଯୁକ୍ତ ମନୁଷ୍ୟକୁ ସଦ୍‌ଜ୍ଞାନର ଅନୁଦାନ ଦେଇ ତାହାକୁ ସୃଷ୍ଟିର ମୁକୁଟମଣି କରିଦେଲେ । ଉଭୟ ବ୍ରହ୍ମକୁମାର ଶିବ ଓ ଶକ୍ତିଙ୍କ ସମନ୍ୱୟର ପ୍ରତିଫଳ ଅଟନ୍ତି । ଶକ୍ତି–କୁଣ୍ଡଳିନୀ, ଶିବ–ସହସ୍ରାର, ଉଭୟଙ୍କ ସଂଯୋଗକୁ କୁଣ୍ଡଳିନୀ ଜାଗରଣ କୁହାଯାଏ । ଏହି ପୁଣ୍ୟପ୍ରକ୍ରିୟା ସମ୍ପନ୍ନ ହେଲେ ଅନ୍ତରଙ୍ଗ ଋତମ୍ଭରା ପ୍ରଜ୍ଞା ଦ୍ୱାରା ଓ ବହିରଙ୍ଗ ପ୍ରଖରତା ଦ୍ୱାରା ପରିପୂର୍ଣ୍ଣ ହୋଇଯାଏ । ଏହି ଦୁଇ ଚରଣ ସାହାଯ୍ୟରେ ପ୍ରଗତି ପଥରେ ଅଗ୍ରସର ହେବା ଦ୍ୱାରା ଜୀବନଯାତ୍ରା ପୂର୍ଣ୍ଣ ହୁଏ ଏବଂ ପରମ ଲକ୍ଷ୍ୟର ପ୍ରାପ୍ତି ସମ୍ଭବ ହୁଏ ।

ଗଣେଶଙ୍କ ଜନ୍ମ ସମୟରେ ଶିବ ତାହାଙ୍କୁ ପାର୍ବତୀଙ୍କ ସହିତ ପରିଚିତ

କରାଇଲେ ଏବଂ ତାଙ୍କୁ ପାର୍ବତୀଙ୍କ ହାତରେ ସମର୍ପଣ କରିଦେଲେ । ବାମନ ପୁରାଣରେ ନିମ୍ନୋକ୍ତ ରୂପେ ତାହାର ବିବରଣ ଅଛି-

**ଯସ୍ମାଜ୍ଜାତସ୍ତତୋ ନାମ୍ନଃ ଭବିଷ୍ୟତି ବିନାୟକଃ ।**
**ଏଷ ବିଘ୍ନ ସହସ୍ରାଣି ଦେବାଦୀନଂ ହନିଷ୍ୟତି ॥**
**ପୂଜୟିଷ୍ୟନ୍ତି ଦେବାଶ୍ଚ ଦେବି ଲୋକାଶ୍ଚରାଚରାଃ ।**
**ଇତ୍ୟେବ ମୁକ୍ତ୍ୱା ଦେବ୍ୟାସ୍ତୁ ଦତ୍ତବାଂସ୍ତନୟଂ ସ ହି ॥**

-ବାମନ ପୁରାଣ

ଅର୍ଥାତ୍- ଏହି ଜ୍ଞାନପୁତ୍ରର ନାମ ହେବ ବିନାୟକ ଗଣେଶ । ସେ ଦେବତାଙ୍କର ସହସ୍ର ବିଘ୍ନ ହନନ କରିବ । ହେ ଦେବି ! ଚର ଅଚର ସମସ୍ତ ଲୋକ ଓ ଦେବଗଣ ଏହାକୁ ପୂଜା କରିବେ । ଏହା କହି ଶିବ ସେହି ପୁତ୍ରକୁ ଦେବୀଙ୍କ ହାତରେ ସମର୍ପଣ କଲେ ।

**ସ୍କନ୍ଦୋଽଥବଦନାଦ୍ୱହ୍ନେଃ ଶୁଭ୍ରାତ୍ ଷଡ୍ବଦନୋଽରିହା ।**
**ନିଷ୍କ୍ରାମୋଦ୍ଭୁତୋ ବାଲୋ ରୋଗ ଶୋକ ବିନାଶନଃ ॥**

-ପଦ୍ମ ପୁରାଣ

- ଅର୍ଥାତ୍- ଏହାପରେ ଷଡ଼ମୁଖଯୁକ୍ତ କୁମାର ସ୍କନ୍ଦ ଜନ୍ମ ହେଲେ । ସେ ଅଦ୍ଭୁତ ଏବଂ ଶୋକସନ୍ତାପ ବିନାଶକ ଥିଲେ ।

ଆଦି ଶଙ୍କରାଚାର୍ଯ୍ୟକୃତ ''ସୌନ୍ଦର୍ଯ୍ୟ ଲହରୀ''ରେ ଷଟ୍‌ଚକ୍ର ଓ ସପ୍ତମରେ ସହସ୍ରାରର ବର୍ଣ୍ଣନା ରହିଛି । ଏହି ପରିକର କୁଣ୍ଡଳିନୀ କ୍ଷେତ୍ର ନାମରେ ନାମିତ ହୋଇଛି ।

ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ ଓ ବିଶୁଦ୍ଧ ଚକ୍ରକୁ ପଞ୍ଚତତ୍ତ୍ୱର ପ୍ରତୀକ ମନେ କରାଯାଏ । ଆଜ୍ଞାଚକ୍ର ତଥା ସହସ୍ରାରକୁ ବ୍ରହ୍ମ ଚେତନାର ପ୍ରତିନିଧି ରୂପେ ଗ୍ରହଣ କରାଯାଏ । ପଞ୍ଚତତ୍ତ୍ୱ ଭେଦ କରିବା ପରେ କୁଣ୍ଡଳିନୀ କିପରି ବ୍ରହ୍ମଲୋକରେ ପହଞ୍ଚିଯାଏ ଓ ପରଂବ୍ରହ୍ମଙ୍କ ସହିତ 'ବିହାର' କରେ, ତାହାର ବର୍ଣ୍ଣନା ନବମ ଶ୍ଳୋକରେ ନିମ୍ନୋକ୍ତ ଭାବରେ କରାଯାଇଛି-

ମହୀଂ ମୂଳାଧାରେ କମପ ମଣିପୂର ହୁତବହଃ,
ସ୍ଥିତଂ ସ୍ୱାଧିଷ୍ଠାନେ ହୃଦି ମରୁତମାକାଶମୁପରି ।
ମନୋଽଅପି ଭ୍ରୂମଧ୍ୟେ ସକଳମପିଭିତ୍ୱା କୁଳପଥଂ,
ସହସ୍ରାରେ ପଦ୍ମେ ସହରହସି ପତ୍ୟା ବିହରସି ।।"

ଅର୍ଥାତ୍– ହେ କୁଣ୍ଡଳିନୀ, ତୁମେ ମୂଳାଧାରରେ ପୃଥିବୀକୁ, ସ୍ୱାଧିଷ୍ଠାନରେ ଅଗ୍ନିକୁ, ମଣିପୁରରେ ଜଳକୁ, ଅନାହତରେ ବାୟୁକୁ, ବିଶୁଦ୍ଧରେ ଆକାଶକୁ ଭେଦ କରି ଆଜ୍ଞାଚକ୍ରରେ ମନକୁ ଆଲୋକ ଦିଅ । ତାହାପରେ ସହସ୍ରାର କମଳରେ ପରଂବ୍ରହ୍ମଙ୍କ ସହିତ ବିହାର କର ।

ଅବାପ୍ୟ ସ୍ୱାଂ ଭୂମିଂ, ଭୁଜଗନିଭ ମଧ୍ୟୁଷ୍ଟ ବଳୟଂ ।
ସ୍ୱାମାତ୍ମାନଂ କୃତ୍ୱା, ସ୍ୱପିଷି କୁଳ କୁଣ୍ଡେ କୁହରିଣି ।।

–ସୌନ୍ଦର୍ଯ୍ୟ ଲହରୀ– ୧୦

ଅର୍ଥାତ୍– ସର୍ପିଣୀ ପରି ତୁମେ କୁଣ୍ଡଳୀ ହୋଇ ମୂଳାଧାର ଚକ୍ରର 'କୁଳକୁଣ୍ଡ'ରେ ଶୟନ କରିଥାଅ ।

ଅବିଦ୍ୟା ନାମନ୍ତସ୍ତିମିର ମିହିରୋଦ୍ଦୀପନ କରୀ ।
ଜଡ଼ାନାଂ ଚୈତନ୍ୟ, ସ୍ତବକ ମକରନ୍ଦ ସ୍ରୁତି ଶିରା ।
ଦରିଦ୍ରାଣାଂ ଚିନ୍ତାମଣି ଗୁଣନିକା ଜନ୍ୟ ଜଳଧୌ ।
ନିମଗ୍ନାନାଂ ଦଂଷ୍ଟ୍ରା, ମୁରସି କୁବରାହସ୍ୟ ଭବତୀ ।।

–ସୌନ୍ଦର୍ଯ୍ୟ ଲହରୀ

ଅର୍ଥାତ୍– ଅଜ୍ଞାନମାନଙ୍କର ଅନ୍ଧକାରର ନାଶ କରିବା ସକାଶେ ତୁମେ ସୂର୍ଯ୍ୟ ସମାନ ଅଟ । ବୁଦ୍ଧିହୀନଙ୍କଠାରେ ଚେତନାର ଅମୃତ ପ୍ରବାହିତ କରୁଥିବା ନିର୍ଝରିଣୀ ଅଟ । ଦରିଦ୍ରଙ୍କ ସକାଶେ ତୁମେ ଚିନ୍ତାମଣିମାଳା ଏବଂ ଭଗସାଗରରେ ବୁଡ଼ି ଯାଇଥିବା ଲୋକଙ୍କୁ ସାହାଯ୍ୟ ଦେବା ପାଇଁ ତୁମେ ନୌକା ଅଟ । ଦୁଷ୍ଟଙ୍କୁ ସଂହାର କରିବା ସକାଶେ ତୁମେ ବରାହ ଭଗବାନଙ୍କର ତୀକ୍ଷ୍ଣଦନ୍ତ ସଦୃଶ ।

ସୌନ୍ଦର୍ଯ୍ୟ ଲହରୀର ୩୬ ଠାରୁ ୪୧ ଶ୍ଳୋକରେ ଷଟ୍‌ଚକ୍ରର ଜାଗରଣ

ଓ କୁଣ୍ଡଳିନୀ ଉତ୍‌ଥାନର ପ୍ରତିକ୍ରିୟା ବିଷୟରେ ବର୍ଣ୍ଣନା କରାଯାଇଛି । ଏହି ଶ୍ଳୋକରେ କୁହାଯାଇଛି ଯେ ମୂଳାଧାରରେ ବିଶ୍ୱବୈଭବ, ସ୍ୱାଧିଷ୍ଠାନରେ ଶାନ୍ତି ଓ ଶୀତଳତା, ମଣିପୁରରେ ଅମୃତ ବର୍ଷା, ଅନାହତରେ ଋତମ୍ଭରା ପ୍ରଜ୍ଞା ଓ ଅଷ୍ଟାଦଶ ବିଦ୍ୟା, ବିଶୁଦ୍ଧରେ ଆନନ୍ଦ ପ୍ରଦାୟିନୀ ଦିବ୍ୟଜ୍ୟୋତିର ସିଦ୍ଧି ପରିପୂର୍ଣ୍ଣ ହୋଇ ରହିଛି । ଆଜ୍ଞା ଚକ୍ରରେ ଶିବତ୍ୱ ଏହି ସହସ୍ରାରରେ ମହାମିଳନର ସଂକେତ ରହଛି । ଏ ଉପଲବ୍‌ଧିର ସମନ୍ୱୟ ଅତ୍ୟନ୍ତ ମହାନ୍ । ଏହାକୁ ଋଷିତ୍ୱ, ଦେବତ, କୁହାଯାଇପାରେ । ଏହି ମାର୍ଗକୁ ଆଶ୍ରୟ କରି ଅପୂର୍ଣ୍ଣ ଅବସ୍ଥାରୁ ଅଗ୍ରସର ହୋଇ ପୂର୍ଣ୍ଣତା ଲାଭ କରିବା ସମ୍ଭବ ବୋଲି ଏ ଶ୍ଳୋକରେ ଉଲ୍ଲେଖ ରହିଛି ।

କୁଣ୍ଡଳିନୀ ମହାଶକ୍ତିର ଅନୁଗ୍ରହ ଫଳରେ ସ୍ୱୟଂ ଆଦିଶଙ୍କର କିପରି ସାଧାରଣ ଦ୍ରାବିଡ଼ ବାଳକରୁ ମହାମାନବ ହୋଇପାରିଲେ, ସେହି ନିଜସ୍ୱ ଅନୁଭୂତି ବର୍ଣ୍ଣନା କରି ସେ କହିଛନ୍ତି–

ତବସ୍ତନ୍ୟଂ ମନ୍ୟେ ଧରଣିଧରକନ୍ୟେ ହୃଦୟତଃ ।
ପୟଃ ପାରାବାରଃ ପରିବହତି ସାରସ୍ୱତମିବ ।।
ଦୟାବତ୍ୟା ଦତ୍ତଂ ଦ୍ରବିଡ଼ ଶିଶୁରାସ୍ୱାଦ୍ୟ ତବୟତ୍ ।
କବୀନାଂ ପ୍ରୌଢ଼ାନାମଜନି କମନୀୟଃ କବୟିତା ।।

–ସୌନ୍ଦର୍ଯ୍ୟ ଲହରୀ

ଅର୍ଥାତ୍– ତୁମ ସ୍ତନରୁ ପ୍ରବାହିତ ଜ୍ଞାନାମୃତ ରୂପୀ ପୟଃ ପାନ କରି ଏହି ଦ୍ରାବିଡ଼ ଶିଶୁ (ଶଙ୍କରାଚାର୍ଯ୍ୟ) ପ୍ରୌଢ଼ କବିଙ୍କ ସମାନ କମନୀୟ କାବ୍ୟ ରଚନା ସକାଶେ ସମର୍ଥ ହେଲା ।

***

# ଅଖଣ୍ଡ ଆନନ୍ଦ ପ୍ରାପ୍ତି

ସାଂସାରିକ ଭୋଗରେ ଏକ ବିଚିତ୍ର ଆକର୍ଷଣ ଅଛି । ଏହି କାରଣରୁ ତାହା ସହଜରେ ମନୁଷ୍ୟକୁ ନିଜ ଆଡ଼କୁ ଆକୃଷ୍ଟ କରେ । କିନ୍ତୁ ଏହା ଅପେକ୍ଷା ଅଦ୍‌ଭୁତ କଥା ହେଉଛି– ଏହି ଭୋଗର ସୁବିଧା ଯେତେ ଅଧିକ ମିଳେ, ମନୁଷ୍ୟ ସେତିକି ସେ ଦିଗକୁ ଓଟାରି ହୋଇଯାଏ । ଶେଷରେ ମନୁଷ୍ୟ ଦିନେ ସେଥିରେ ଆକଣ୍ଠ ବୁଡ଼ିଯାଇ ନଷ୍ଟ ହୋଇଯାଏ । ଅସମର୍ଥ ପରି ବାଧ ହୋଇ ଶାରୀରିକ ଭୋଗ ଆଡ଼କୁ ଓଟାରି ହେବା ଉଚିତ ନୁହେଁ । ମନୁଷ୍ୟ ନିଜେ ନିଜର ପ୍ରଭୁ ହେବା ଦରକାର । ଯନ୍ତ୍ରବତ୍ ପ୍ରବୃତ୍ତିର ସଂକେତରେ ପରିଚଳିତ ହେବା ସର୍ବଥା ଅନୁଚିତ । ସଂଯମ ମନୁଷ୍ୟର କେବଳ ଶୋଭା ନୁହେଁ, ବରଂ ଏହା ଶକ୍ତି ଅଟେ । ନିଜର ଏହି ଶକ୍ତି ବ୍ୟବହାର କରି ମନୁଷ୍ୟ ନିଜକୁ ବିନାଶକାରୀ ଭୋଗର କବଳରୁ ରକ୍ଷା କରିବା ଦରକାର । ମନୁଷ୍ୟ ଜୀବନ ଅନୁପମ ଉପଲବ୍‌ଧି । ଏମିତି ଶସ୍ତାରେ ତାହାକୁ କ୍ଷୀଣ କରିବା ଉଚିତ ନୁହେଁ କି କଲ୍ୟାଣକାରୀ ନୁହେଁ ।

ଭୋଗର ଆଧିକ୍ୟ ମନୁଷ୍ୟର ଶାରୀରିକ, ମାନସିକ, ଆତ୍ମିକ ଏଇ ତିନି ପ୍ରକାର ଶକ୍ତିକୁ କ୍ଷୀଣ କରେ । ଏହା ନିର୍ବିବାଦ ସତ୍ୟ ଅଟେ । ଭ୍ରମବଶତଃ ମନୁଷ୍ୟ ଭୋଗରେ ଆନନ୍ଦର କଳ୍ପନା କରିଥାଏ । ଏହାର ରୂପ ପ୍ରକୃତରେ ବିଷାକ୍ତ । ଯୁବାବସ୍ଥାରେ ଏ ରୋଗ ଅଧିକ ଆକ୍ରମଣ କରେ । ମଧ୍ୟ ବୟସରେ ଶାରୀରିକ ଶକ୍ତିର ବାହୁଲ୍ୟ ଦେଖାଯାଏ । ଏହା ସହିତ ଜୀବନତତ୍ତ୍ୱର କିଛି ନବନିର୍ମାଣ ମଧ୍ୟ ହୋଇଥାଏ । ତେଣୁ ସେତେବେଳେ ଏହାର କୁପ୍ରଭାବ ଶୀଘ୍ର ଦୃଷ୍ଟିଗୋଚର ହୋଇ ନଥାଏ । କିନ୍ତୁ ଅବସ୍ଥାର ଉତ୍‌ଥାନ ପ୍ରକ୍ରିୟା ବନ୍ଦ ହେବା ମାତ୍ରେ ତାହାର କୁପରିଣାମ ଅନୁଭୂତ ହୁଏ । ଲୋକମାନଙ୍କର ଅକାଳ ବାର୍ଦ୍ଧକ୍ୟ ଆସେ । ସେମାନେ ଦୁର୍ବଳତା ଓ ନାନାବିଧ ବ୍ୟାଧିର ଶିକାର ହୋଇଥାନ୍ତି । ଚାଳିଶ ବର୍ଷ ବୟସରେ ପହଞ୍ଚିବା କ୍ଷଣି ସାହାଯ୍ୟ ଲୋଡ଼ନ୍ତି । ଇନ୍ଦ୍ରିୟମାନେ ଶିଥିଳ ହୋଇପଡ଼ନ୍ତି ଏବଂ ଜୀବନ ଏକ ବୋଝ ଭଳି ମନେ ହୁଏ । ମନୁଷ୍ୟର ଶକ୍ତି ଏବଂ ବାସ୍ତବ ଜୀବନ ବୋଲାଉଥିବା ଶରୀରର ତତ୍ତ୍ୱ ବୀର୍ଯ୍ୟର ଅପବ୍ୟୟ ହୋଇଥାଏ । ଏହା ଫଳରେ ଶରୀର ଅନ୍ତଃସାରଶୂନ୍ୟ ହୋଇଯାଏ ।

ଯିଶୁ ସାରାଜୀବନ ବ୍ରହ୍ମଚାରୀ ଥିଲେ । ଉନ୍ନତ ବୁଦ୍ଧିଜୀବୀମାନେ ଅଧିକାଂଶ ସଂଯତ ଜୀବନ ଯାପନ କରିଥାନ୍ତି । ବୈଜ୍ଞାନିକ, ଦାର୍ଶନିକ, ବିଚାରକ, ସଂସ୍କାରକ ତଥା ସେହିପରି ଉଚ୍ଚ ଚେତନାଯୁକ୍ତ ବ୍ୟକ୍ତିମାନେ ସଂଯତ ଜୀବନଯାପନ କରିବାର ଦେଖାଯାଇଥାନ୍ତି ।

ଗୃହସ୍ଥାଶ୍ରମରେ ସନ୍ତାନ ଉତ୍ପାଦନର ବାହାନା କରି ଭୋଗପୂର୍ଣ୍ଣ ଜୀବନ ଯାପନ କରୁଥିବା ଲୋକମାନେ ଗୃହସ୍ଥାଶ୍ରମର ବାସ୍ତବ ଉଦ୍ଦେଶ୍ୟ ବୁଝିପାରି ନଥାନ୍ତି । ସୃଷ୍ଟିକ୍ରମକୁ ସ୍ଥିର ରଖିବା ଉଦ୍ଦେଶ୍ୟରେ ଦାମ୍ପତ୍ୟ ଜୀବନ ଅନିବାର୍ଯ୍ୟ ବୋଲି ଅବଶ୍ୟ ସ୍ୱୀକାର କରାଯାଇଛି । ତଥାପି ସେଥିରେ ସଂଯମର ମହତ୍ତ୍ୱ ହ୍ରାସ କରାଯାଇ ନାହିଁ । ଧର୍ମ କର୍ତ୍ତବ୍ୟ ଦୃଷ୍ଟିରୁ ସନ୍ତାନ ଉତ୍ପାଦନ ଅନ୍ୟ ଏକ ବିଷୟ । କାମୁକତାର ବଶୀଭୂତ ହୋଇ ଦାମ୍ପତ୍ୟ ଜୀବନକୁ ଭୋଗର ମାଧ୍ୟମ କରିବା ଏହାଠାରୁ ଅଲଗା । ସଂସାରର ସବୁ ବିଦ୍ୱାନ ଏବଂ ବିବେକଶୀଳ ବ୍ୟକ୍ତି ଏ ପ୍ରକାର ଆଚରଣକୁ ଅନୁଚିତ ତଥା ମାନବ ଜୀବନର ବିନଷ୍ଟକାରୀ ବୋଲି କହିଛନ୍ତି । ବେଦରେ ଉଲ୍ଲେଖ ଅଛି– 'ବ୍ରହ୍ମଚର୍ଯ୍ୟେଣ ତପସା ଦେବାମ୍ ମୃତ୍ୟୁପାଧ୍ନତ' ଅର୍ଥାତ୍ ବ୍ରହ୍ମଚର୍ଯ୍ୟ ପ୍ରଭାବରେ ମନୁଷ୍ୟ କେବଳ ବଳବାନ ଓ ଶକ୍ତିଶାଳୀ ହୋଇ ନ ଥାଏ, ବରଂ ମୃତ୍ୟୁ ଉପରେ ବିଜୟ ଲାଭ କରିପାରେ ।

ବ୍ରହ୍ମଚର୍ଯ୍ୟର ମହିମା ବିଷୟରେ ଛାନ୍ଦୋଗ୍ୟୋପନିଷଦ୍‌ରେ କୁହାଯାଇଛି– ଗୋଟିଏ ଦିଗରେ ଚାରି ବେଦର ଉପଦେଶ ଏବଂ ଅନ୍ୟ ଦିଗରେ ବ୍ରହ୍ମଚର୍ଯ୍ୟକୁ ରଖି ଯଦି ଉଭୟକୁ ତଉଲ କରାଯାଏ, ତେବେ ବ୍ରହ୍ମଚର୍ଯ୍ୟର ଓଜନ ବେଦ ବର୍ଣ୍ଣିତ ଉପଦେଶର ଓଜନ ସହିତ ସମାନ ହେବ ।''

ବିଷୟ ଭୋଗର ନିଷେଧ କରି ଭଗବାନ ଗୀତାରେ ସ୍ପଷ୍ଟ କରିଛନ୍ତି–

**''ଯେ ହି ସଂସ୍ପର୍ଶଜା ଭୋଗା ଦୁଃଖଯୋନୟ ଏବ ତେ ।**
**ଆଦ୍ୟନ୍ତବନ୍ତ କୌନ୍ତେୟ ନ ତେଷୁ ରମତେ ବୁଧଃ ।।''**

ଅର୍ଥାତ୍– ଇନ୍ଦ୍ରିୟ ତଥା ବିଷୟ ସଂଯୋଗରେ ଉତ୍ପନ୍ନ ହେଉଥିବା ସୁଖ ବିଷୟାସକ୍ତ ପୁରୁଷ ଦୃଷ୍ଟିରେ ସୁଖ ବୋଲି ପ୍ରତୀତ ହୁଏ । ବାସ୍ତବରେ ତାହା ଦୁଃଖର ହେତୁ ଓ ନାଶବାନ । ତେଣୁ ହେ କୁନ୍ତୀ ପୁତ୍ର ଅର୍ଜ୍ଜୁନ ! ବୁଦ୍ଧିମାନ ବ୍ୟକ୍ତି ଏଥିରେ ଲିପ୍ତ ଓ ଆସକ୍ତ ହୋଇ ନ ଥାନ୍ତି ।

କେବଳ ଧର୍ମଶାସ୍ତ୍ରରେ ନୁହେଁ, ବରଂ ଲୌକିକ ଶାସ୍ତ୍ରରେ ମଧ୍ୟ ବ୍ରହ୍ମଚର୍ଯ୍ୟର ମହିମା ବର୍ଣ୍ଣନା କରାଯାଇଛି । ଆୟୁର୍ବେଦ ଶାସ୍ତ୍ର ଚରକ ସଂହିତାରେ ଉଲ୍ଲେଖ ଅଛି-

''ସତାମୁପାସନଂ ସମ୍ୟଗସତାଂ ପରିବର୍ଜନମ୍ ।
ବ୍ରହ୍ମଚର୍ଯ୍ୟୋପବାସଶ୍ଚ ନିୟମାଶ୍ଚ ପୃଥଗ୍‌ବିଧାଃ ।।''

ଅର୍ଥାତ୍- ସଜ୍ଜନମାନଙ୍କ ସେବା, ଦୁର୍ଜନଙ୍କୁ ପରିତ୍ୟାଗ, ବ୍ରହ୍ମଚର୍ଯ୍ୟ, ଉପବାସ, ଧର୍ମଶାସ୍ତ୍ରର ନିୟମ ବିଷୟରେ ଜ୍ଞାନ ଅଭ୍ୟାସ ଆତ୍ମକଲ୍ୟାଣର ମାର୍ଗ ଅଟେ ।

କେବଳ ଏତିକି ନୁହେଁ, ଭାରତୀୟ ମନୀଷୀଗଣ ଜୀବନରେ ବ୍ରହ୍ମଚର୍ଯ୍ୟ ସଂଯମର ଗୁଣଗାନ କରିଛନ୍ତି । ବିଦେଶୀ ବିଚାରକଗଣ ମଧ୍ୟ ଏହାର ଅଳ୍ପ ପ୍ରଶଂସା କରିନାହାନ୍ତି । ପ୍ରସିଦ୍ଧ ଜୀବଶାସ୍ତ୍ରୀ ଡାଃ କ୍ରାଉନ୍ ଲେଖିଛନ୍ତି- ରୋଗଗ୍ରସ୍ତ ଅବସ୍ଥା କ'ଣ, ତାହା ବ୍ରହ୍ମଚାରୀ ଜାଣି ନଥାଏ । ତାହାର ପରିପାକ ଶକ୍ତି ସର୍ବଦା ନିୟନ୍ତ୍ରିତ ହୋଇ ରହେ । ବୃଦ୍ଧାବସ୍ଥାରେ ମଧ୍ୟ ସେ ବାଲ୍ୟବସ୍ଥା ପରି ଆନନ୍ଦ ଅନୁଭବ କରେ ।

ଆମେରିକାର ପ୍ରସିଦ୍ଧ ପ୍ରାକୃତିକ ଚିକିତ୍ସାଶାସ୍ତ୍ରୀ ଡାଃ ବେନୀକ୍ଟ ଲୁଷ୍ଟାଙ୍କ ବକ୍ତବ୍ୟ ହେଉଛି- ''ଯେଉଁ ମନୁଷ୍ୟ ଯେତେ ଅଂଶରେ ବ୍ରହ୍ମଚର୍ଯ୍ୟ ରକ୍ଷା କରେ, ତଦନୁପାତରେ ସେ ବିଶେଷ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରିପାରେ ।''

ବୀର୍ଯ୍ୟର ବୈଜ୍ଞାନିକ ମହତ୍ତ୍ୱ ପ୍ରତିପାଦନ କରି ସିଦ୍ଧ ସନ୍ଥ ସ୍ୱାମୀ ରାମତୀର୍ଥ ଓ ଯୋଗୀ ଅରବିନ୍ଦ ନିଜର ଅନୁଭୂତି ବ୍ୟକ୍ତ କରି କହିଛନ୍ତି- ''ଦୀପରେ ଥିବା ତେଲ ବତି ସାହାଯ୍ୟରେ ଉପରକୁ ଉଠି ଯେପରି ଆଲୋକ ରୂପେ ପରିଣତ ହୁଏ, ସେହିପରି ବ୍ରହ୍ମଚାରୀର ଶରୀରରେ ଥିବା ବୀର୍ଯ୍ୟ ସୁଷୁମ୍ନା ନାଡ଼ୀ ଦ୍ୱାରା ପ୍ରାଣରୂପେ ପରିବର୍ତ୍ତିତ ହୋଇ ଊର୍ଦ୍ଧ୍ୱଗାମୀ ହୋଇଥିବା ଜ୍ଞାନଦୀପ୍ତିରେ ପରିଣତ ହୋଇଥାଏ । ରେତସ୍ (ବୀର୍ଯ୍ୟ)ର ଯେଉଁ ତତ୍ତ୍ୱ ରତିକ୍ରିୟା ସମୟରେ କାମରେ ଲାଗେ; ଜିତେନ୍ଦ୍ରିୟ ହେଲେ ସେ ତତ୍ତ୍ୱ ପ୍ରାଣ, ମନ ଓ ଶାରୀରିକ ଶକ୍ତିକୁ ପରିପୋଷଣ କରୁଥିବା ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ତତ୍ତ୍ୱ ରୂପେ ବଦଳିଯାଏ ।

ପିତା ଆଶୁତୋଷ ଶିବଙ୍କୁ ପ୍ରସନ୍ନ ଚିତ୍ତ ଦେଖି କୁମାର ସ୍କନ୍ଦ ତାଙ୍କ ନିକଟକୁ ଯାଇ ପ୍ରଶ୍ନ କଲେ, "ହେ ପିତା ! ଆପଣ ଯେପରି ଦୁର୍ଲଭ ସାଧନା କରିଛନ୍ତି ସେପରି କରିବାର ସାହସ ଅନ୍ୟ କାହା ନିକଟରେ ନାହିଁ, ସେ ସିଦ୍ଧିର ସ୍ୱାମୀତ୍ୱ ଓ ବ୍ରହ୍ମପ୍ରାପ୍ତି ସକାଶେ ଇଚ୍ଛା କଲେ, ତାହାକୁ କ'ଣ କରିବାକୁ ହେବ ? ଆପଣ ଏହାର ସରଳ ଉପାୟ ମୋତେ କୁହନ୍ତୁ ।" ଜନକଲ୍ୟାଣ ଇଚ୍ଛୁକ ଭଗବାନ ଶଙ୍କର କହିଲେ-

**ସିଦ୍ଧେ ବିନ୍ଦୌ ମହାଯତ୍ନେ କିଂ ନ ସିଦ୍ଧ୍ୟତି ଭୂତଲେ ।**

**ଯସ୍ୟ ପ୍ରସାଦାତ୍ ମହିମା, ମମାପ୍ୟେତାଦୃଶୋ ଭବେତ୍ ।।**

ଅର୍ଥାତ୍- ହେ ବତ୍ସ ! ସେଥିପାଇଁ ଉପାୟ ଅଛି । ଅଖଣ୍ଡ ବ୍ରହ୍ମଚର୍ଯ୍ୟ ଅର୍ଥାତ୍ ଯେଉଁ ବ୍ୟକ୍ତି ଯତ୍ନପୂର୍ବକ ନିଜର ବୀର୍ଯ୍ୟକୁ ସିଦ୍ଧ କରିଛି, ତାହା ପାଇଁ ଏ ପୃଥିବୀରେ କିଛି ଦୁର୍ଲଭ ନୁହେଁ । ସିଦ୍ଧବୀର୍ଯ୍ୟ ପୁରୁଷ ମୋ ପରି ସମର୍ଥ ହୋଇପାରେ ।

ଉପରୋକ୍ତ ପଂକ୍ତିରେ ବୀର୍ଯ୍ୟ ତତ୍ତ୍ୱ ବିଷୟରେ ଯାହା କିଛି କୁହାଯାଇଛି, ବ୍ରହ୍ମଚର୍ଯ୍ୟବ୍ରତୀ ଜୀବନ ଯାପନ କରି ତାହା ଯଥାର୍ଥ କି ନୁହେଁ ଅନୁଭବ କରାଯାଇପାରେ । ବୈଜ୍ଞାନିକଗଣ ଏହାକୁ ଯଥାର୍ଥ ବୋଲି ମନେକଲେଣି । ସେମାନେ କହନ୍ତି, ଶୁକ୍ର କୀଟକୁ ଏକ ସୁରକ୍ଷିତ ମିଶ୍ରଣରେ ରଖାଯାଇଥାଏ । ଏଥିରୁ ଜଣାପଡ଼େ ଯେ ବୀର୍ଯ୍ୟ ସୃଷ୍ଟିର କେତେ ମହତ୍ତ୍ୱପୂର୍ଣ୍ଣ ତତ୍ତ୍ୱ ଅଟେ । ବୀର୍ଯ୍ୟ ଏକ ପ୍ରକାରର ରସାୟନ । ବୀର୍ଯ୍ୟକୀଟ ସେଥିରେ ରହୁଥିବା ଏକ ପ୍ରକାର ଜୀବାଣୁ । ଏହି ତରଳ ପଦାର୍ଥରେ ଶତକଡ଼ା ୭୫ ଭାଗ ଜଳ, ୫ ଭାଗ ଫସ୍‌ଫେଟ୍ ଅଫ ଲାଇମ୍, ୪ ଭାଗ ଚର୍ବି, ୩ ଭାଗ ପ୍ରୋଟିନ୍ ଅକ୍ସାଇଡ୍ ଓ ବାକୀ ଅଂଶ ଫସ୍‌ଫେଟ୍, ଫସ୍‌ଫରସ୍, ସୋଡ଼ିଅମ୍ କ୍ଲୋରାଇଡ୍ ଇତ୍ୟାଦି ଥାଏ । ପୁରୁଷର ଶୁକ୍ରକୀଟ (Sperm) ସ୍ତ୍ରୀର ଡିମ୍ବ (Ovum) ଉତ୍ପାଦନ ହୁଏ ପୁରୁଷର ଅଣ୍ଡକୋଷରୁ ଓ ସ୍ତ୍ରୀର ଡିମ୍ବକୋଷରୁ । ଏଠାରୁ ଏକପ୍ରକାର ରସ (ବୀର୍ଯ୍ୟ ରସାୟନର ଏକ ପ୍ରକାର ପ୍ଲାଜ୍ମା) ସ୍ରାବ ହୋଇଥାଏ । ଏହା ସମଗ୍ର ଶରୀରରେ ଓଜସ୍ ଓ ତେଜସ୍ ରୂପେ ଥାଏ । ଏହି ତେଜସ୍ ପରସ୍ପର ମଧ୍ୟରେ ଆକର୍ଷଣର କାରଣ

ହୋଇଥାଏ । ଯେଉଁ ଶରୀରରେ ବୀର୍ଯ୍ୟର ପ୍ରାଚୁର୍ଯ୍ୟ ଥାଏ, ସେ ଶରୀର କଳା, କୁରୂପ ହୋଇଥିଲେ ସୁଦ୍ଧା ଆକର୍ଷଣୀୟ ହୋଇଥାଏ । କଥିତ ଅଛି, ଅଷ୍ଟବକ୍ରଙ୍କ ଶରୀରରେ ଆଠଗୋଟି ସ୍ଥାନ ବଙ୍କା ହୋଇଥିଲା । ସଂଯମ ଦ୍ୱାରା ତାଙ୍କ ମୁଖମଣ୍ଡଳରେ ତେଜ ବିରାଜମାନ କରୁଥିଲା । ମହାରାଜ ଜନକ ତାଙ୍କୁ ଦେଖି ହତପ୍ରଭ ହୋଇଯାଇଥିଲେ ।

ପୁରୁଷର ଶରୀରରେ ପୌରୁଷ ଓ ନାରୀର ଶରୀରରେ ନାରୀତ୍ୱ ଲକ୍ଷଣର କାରଣ ଏହି ବୀର୍ଯ୍ୟ ଅଟେ । ଆୟୁର୍ବେଦ ଭାଷାରେ ଏହାକୁ ଅନ୍ତଃବୀର୍ଯ୍ୟ ସଂଜ୍ଞା ଦିଆଯାଇଛି । ଆଧୁନିକ ବିଜ୍ଞାନ ଏତେ ବିକଶିତ ହୋଇ ସୁଦ୍ଧା ବୀର୍ଯ୍ୟ ଉତ୍ପତ୍ତିର କୌଣସି ସିଦ୍ଧାନ୍ତ ନିର୍ଦ୍ଦିଷ୍ଟ କରିପାରି ନାହିଁ । ସାଧାରଣ ରାସାୟନିକ ଗଠନ ବ୍ୟତୀତ ସେମାନେ ଏତିକି ଅଧିକ ଜାଣିଛନ୍ତି ଯେ ବୀର୍ଯ୍ୟର ଏକ କୋଷ (Sperm) ନାରୀର ଡିମ୍ବ (Ovum) ସହିତ ମିଳିତ ହୁଏ । ଏହି ବୀର୍ଯ୍ୟକୋଷ ପୁନଃ ଉତ୍ପାଦନ ଆରମ୍ଭ କରେ ଏବଂ ମା'ଠାରୁ ମିଳୁଥିବା ଆହାର ପାଇ କୋଷ ବିଭାଜନ ପ୍ରକ୍ରିୟା (ଏକରୁ ଦୁଇ, ଦୁଇରୁ ଚାରି, ଚାରିରୁ ଆଠ) ଅନୁସାରେ ବିଭକ୍ତ ହୋଇଥାଏ । ବୀର୍ଯ୍ୟ ପରମାଣୁ ଚେତନାର ସର୍ବାଧିକ ସୂକ୍ଷ୍ମ ଅଟେ । ଏହା ୧/୧୬୦୦ ଠାରୁ ୧/୧୭୦୦ ଇଞ୍ଚ ଲମ୍ବ । ଏଥିରେ କେବଳ ମନୁଷ୍ୟ ଶରୀର ନୁହେଁ, ବରଂ ବିରାଟ ବିଶ୍ୱର ଶକ୍ତିବୀଜ ସମାହିତ ଥାଏ । ସୃଷ୍ଟି ପରମ୍ପରାର କ୍ଷମତା ମଧ୍ୟ ଏହି ବୀଜରେ ରହିଥାଏ । ଏହାର ଶକ୍ତିର ଅନୁମାନ କରିବା ଅତି କଠିନ ।

ପ୍ରାଚୀନ କାଳରେ ଯୋଗୀଗଣ ନିଜ ସୂକ୍ଷ୍ମଦୃଷ୍ଟି ସାହାଯ୍ୟରେ କୌଣସି ବୈଜ୍ଞାନିକ ଯନ୍ତ୍ରର ସାହଯ୍ୟ ନ ନେଇ ମହତ୍ତ୍ୱପୂର୍ଣ୍ଣ ଜ୍ଞାନ ଲାଭ କରିଥିଲେ । ଆଜିର ବିଜ୍ଞାନ ତାହାକୁ ସତ ବୋଲି ସ୍ୱୀକାର କରୁଛି । ଉଦାହରଣ ସ୍ୱରୂପ ସ୍ତ୍ରୀର ଗର୍ଭାଶୟରେ ପହଞ୍ଚିଥିବା ବୀର୍ଯ୍ୟକୋଷ ଗର୍ଭଧାରଣ ପରେ ବିକଶିତ ହୋଇଥାଏ । ଏହି ବୀଜକୋଷ ମସ୍ତିଷ୍କରେ ସଞ୍ଚିତ ହୋଇ ରହେ, କାରଣ ଗର୍ଭସ୍ଥ ସନ୍ତାନର ମୁଣ୍ଡ ତଳ ଆଡ଼କୁ ରହିଥାଏ । ଜନ୍ମ ସମୟରେ ଶିଶୁର ଲଲାଟରେ ୧୦ ରତି ବୀର୍ଯ୍ୟ ଥାଏ । ଏହା ହିଁ ଭାରତୀୟ ତତ୍ତ୍ୱଦର୍ଶୀଙ୍କ ମତ । ଏହି କାରଣରୁ ଶିଶୁ ବିଶୁଦ୍ଧ ପରମହଂସ ସମାନ ପ୍ରକୃତି ବିଶିଷ୍ଟ, ବିଶୁଦ୍ଧ ଆନନ୍ଦବାଦୀ, ନିଶ୍ଚିନ୍ତ ଓ କେବଳୋଽହଂ ହୋଇଥାଏ ।

ନଅଠାରୁ ବାର ବର୍ଷ ବୟସ ଭିତରେ ବୀର୍ଯ୍ୟ ଭ୍ରୂପ୍ରଦେଶରୁ ଅବତରଣ କରି କଣ୍ଠକୁ ଆସିଯାଏ । ପ୍ରାୟ ଏତିକିବେଳେ ବାଳକର ସ୍ୱର ଭାରି ହୋଇଯାଏ ଓ ବାଳିକାର ସ୍ୱର ସୁଲଳିତ ହୋଇଥାଏ । ସେ ପର୍ଯ୍ୟନ୍ତ ଉଭୟଙ୍କର ସ୍ୱର ପ୍ରାୟ ଏକାଭଳି ଥାଏ । ଏହା ପରେ ବାଳକର ସ୍ୱରରେ ପୁରୁଷୋଚିତ ଲକ୍ଷଣ ପରିଲକ୍ଷିତ ହୋଇଥାଏ । ଏ ବୟସରେ ବୀର୍ଯ୍ୟରେ ବିପରୀତ ଲିଙ୍ଗ ପ୍ରତି ଆକର୍ଷଣ ସୃଷ୍ଟି ହୋଇଥାଏ । ତେଣୁ ବାଳକ ଓ ବାଳିକାଙ୍କର ସମ୍ପର୍କକୁ ଅଲଗା ଅଲଗା କରି ଦିଆଯାଏ । ଆଜିର ପ୍ରଚଳିତ ସହଶିକ୍ଷା ଏ ଦୃଷ୍ଟିରୁ ପିଲାଙ୍କ ଜୀବନରେ କୁଠାରାଘାତ କରୁଛି । ପରସ୍ପର ମଧ୍ୟରେ ସାମୀପ୍ୟ କାରଣରୁ ପିଲା ବୀର୍ଯ୍ୟମନ୍ଥନ ଆରମ୍ଭ କରିପାରେ । ଏହି କାରଣରୁ ଯୁବକଗଣ ସାରାଜୀବନ ସ୍ୱପ୍ନଦୋଷ, ବୀର୍ଯ୍ୟପାତ ଓ ଶୀଘ୍ରସ୍ଖଳନ ରୋଗଗ୍ରସ୍ତ ହୋଇ ରହନ୍ତି । ଏହା ସମସ୍ତଙ୍କୁ କେବଳ ସ୍ୱାସ୍ଥ୍ୟ ଦୃଷ୍ଟିରୁ ନୁହେଁ, ବରଂ ମାନସିକ ଦୃଷ୍ଟିରୁ ହୀନ କରିଦିଏ ।

ଏଗାର ଠାରୁ ଷୋଳ ବର୍ଷ ବୟସ ଭିତରେ ବୀର୍ଯ୍ୟ ମେରୁଦଣ୍ଡ ପଥରେ ଉପସ୍ଥ ଦିଗକୁ ଗତିକରେ ଏବଂ ଧୀରେ ଧୀରେ ମୂଳାଧାର ଚକ୍ରରେ ଅବସ୍ଥିତ ହୁଏ । କାମ ବିକାର ପ୍ରଥମେ ଜାତ ହୁଏ ମନରେ, ଏହା ପରେ ସଙ୍ଗେ ସଙ୍ଗେ ମୂଳାଧାର ଚକ୍ର ଉତ୍ତେଜିତ ହୋଇଉଠେ । ଏହା ଉତ୍ତେଜିତ ହେବା ଯୋଗୁଁ କାମେନ୍ଦ୍ରିୟ ସଂପୃକ୍ତ ସମଗ୍ର କ୍ଷେତ୍ର ଉତ୍ତେଜିତ ହୋଇଉଠେ । ଏ ଅବସ୍ଥାରେ ବ୍ରହ୍ମଚର୍ଯ୍ୟକୁ ସମ୍ଭାଳି ରଖିବା କଠିନ ହୁଏ । ୨୪ ବର୍ଷ ବୟସ ଭିତରେ ଏହି ବୀର୍ଯ୍ୟ ମୂଳାଧାର ଚକ୍ରରୁ ସମଗ୍ର ଶରୀରରେ ପରିବ୍ୟାପ୍ତ ହୋଇଯାଏ, ଯଥା–

**ଯଥା ପୟସି ସର୍ପିସ୍ତୁ, ଗୁଢ଼ଶ୍ଚେକ୍ଷୌ ରସୋ ଯଥା ।**
**ଏବଂ ହି ସକଳେ କାୟେ ଶୁକ୍ରଂ ତିଷ୍ଠତି ଦେହିନାମ୍ ।।**

ଅର୍ଥାତ୍– କ୍ଷୀରରେ ଯେପରି ଘୃତ, ଆଖୁରେ ଯେପରି ମିଷ୍ଟଗୁଣ ସର୍ବତ୍ର ବିଦ୍ୟମାନ ଥାଏ, ଠିକ୍ ସେହିପରି ବୀର୍ଯ୍ୟ ସମଗ୍ର ଶରୀରରେ ପରିବ୍ୟାପ୍ତ ହୋଇଥାଏ ।

ଯଦି ୨୫ ବର୍ଷ ବୟସ ପର୍ଯ୍ୟନ୍ତ ଆହାର ବିହାରକୁ ଦୂଷିତ କରା ନ ଯାଏ ଓ ବ୍ରହ୍ମଚର୍ଯ୍ୟ ଖଣ୍ଡିତ ନ ହୁଏ, ତେବେ ସେ ବୟସରେ ଶକ୍ତିର ପ୍ରାଚୁର୍ଯ୍ୟ ଓ

ବିଚାରର ପ୍ରଫୁଲ୍ଲତା ଦେଖିବାର ଯୋଗ୍ୟ ହୁଏ । ଏପରି ପିଲାମାନେ ପ୍ରାୟ ସାରା ଜୀବନ ସୁସ୍ଥ ରହିଥାନ୍ତି । କାମବିକାରରେ ଘେରିଥିବା ପିଲାମାନେ ଅବଦମିତ ବାସନା ଜନିତ ସଂକଟର ସମ୍ମୁଖୀନ ହୋଇଥାନ୍ତି । ଯେଉଁ ପିଲାର ମସ୍ତିଷ୍କରେ ମାତୃଭାବ ଥାଏ, କାମବାସନା ପ୍ରଦୀପ୍ତ ହୋଇ ନ ଥାଏ, ତା ପକ୍ଷରେ ଅବଦମିତ ବାସନାର ପ୍ରଶ୍ନ ଉଠେ ନାହିଁ । ଏପରି ଚିନ୍ତା କରୁଥିବା ଲୋକମାନେ ତା ଦୃଷ୍ଟିରେ କୀଟ ସମାନ ଦେଖାଯାନ୍ତି । ସମ୍ଭୋଗରେ ଯେତିକି ଆନନ୍ଦ ଅଛି, ପ୍ରଫୁଲ୍ଲତା, ଉନ୍ମୁକ୍ତତା, ସାହସ, ନିର୍ଭୀକତା, ବାକ୍ ବିନୋଦରେ ମଧ୍ୟ ସେମିତି ଆନନ୍ଦ ଅଛି । ସମ୍ଭୋଗର ଆନନ୍ଦ କ୍ଷଣସ୍ଥାୟୀ, କିନ୍ତୁ ଯଦି ବୀର୍ଯ୍ୟ ଶରୀରରେ ଭଲ ଭାବରେ ପରିପକ୍ୱ ହୋଇଯାଏ ତେବେ ସେ ଆନନ୍ଦ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଉତ୍ସାହ ଓ ସଫଳତା ରୂପେ ଅନୁଭୂତ ହୋଇପାରେ ।

ଉପସ୍ଥକୁ ଆସିଥିବା ସ୍ଥୂଳ ବୀର୍ଯ୍ୟକୁ ଊର୍ଦ୍ଧ୍ୱରେତା କରି ପୁନରାୟ ତାହାକୁ ଲଲାଟପ୍ରଦେଶକୁ ଆଣିହୁଏ । ଏହି ଲଲାଟରୁ ତାହା ମୂଳାଧାର ପର୍ଯ୍ୟନ୍ତ ଆସିଥିଲା । ଏହା ଯୋଗବିଦ୍ୟାର କାମ । କୁଣ୍ଡଳିନୀ ସାଧନାରେ ବିଭିନ୍ନ ପ୍ରାଣାୟାମ ପ୍ରକ୍ରିୟା ଦ୍ୱାରା ସୂର୍ଯ୍ୟଚକ୍ରର ଉଷ୍ମତାକୁ ପ୍ରଜ୍ୱଳିତ କରି (ଇନ୍ଧନ ରୂପେ ବ୍ୟବହାର କରି) ଏହି ବୀର୍ଯ୍ୟକୁ ପାକ କରାଯାଏ ଏବଂ ତାହାକୁ ସୂକ୍ଷ୍ମଶକ୍ତିରେ ରୂପାନ୍ତରିତ କରାଯାଏ । ସେତେବେଳେ ତାହା ନିଜସ୍ୱ ପ୍ରବୃତ୍ତି ଅନୁସାରେ ଊର୍ଦ୍ଧ୍ୱଗାମୀ ହୋଇ ମେରୁଦଣ୍ଡ ପଥରେ ଉପରକୁ ଚଢ଼େ । ସାଧକ ତାହାକୁ କ୍ରମଶଃ ଅନ୍ୟ ଚକ୍ରକୁ ନେଇଯାଏ ଏବଂ ଶେଷରେ ଲଲାଟରେ ପହଞ୍ଚାଇ ଦିଏ । ମସ୍ତିଷ୍କରେ ଶକ୍ତିବୀଜ ପହଞ୍ଚିବା ଓ ସହସ୍ରାର ଚକ୍ରକୁ ଅନୁଭବ କରିବା ହିଁ ବ୍ରହ୍ମନିର୍ବାଣ ଅଟେ । ଭଗବାନ ଶିବ ଏହିପରି ବ୍ୟକ୍ତିଙ୍କୁ ନିଜ ସମାନ ସିଦ୍ଧ ଓ ପୂର୍ଣ୍ଣ ଯୋଗୀ ବୋଲି କହିଛନ୍ତି ।

କଠିନ ଯୋଗ ସାଧନା ନକଲେ ସୁଦ୍ଧା ଯେଉଁ ଲୋକମାନେ ବୀର୍ଯ୍ୟକୁ ଅଖଣ୍ଡ ରଖିପାରନ୍ତି, ସେମାନେ ନିଜ ଭିତରେ ଶକ୍ତିର ଅକ୍ଷୟ ଭଣ୍ଡାର ଥିବା ପରି ଅନୁଭବ କରିଥାନ୍ତି । ଯେକୌଣସି କାମ କରିବାର କ୍ଷମତା ସେମାନଙ୍କ ନିକଟରେ ଥାଏ । ପ୍ରଜ୍ଞାବାନ ଆତ୍ମା ଏଥି ପାଇଁ ଗର୍ଭଧାରଣ ସମୟରୁ ସତର୍କ ରହିଥାନ୍ତି । ବୀର୍ଯ୍ୟକୁ ଅଧୋମୁଖୀ ହେବାକୁ ନ ଦେଇ, ତାହାକୁ ଊର୍ଦ୍ଧ୍ୱଗାମୀ କରିବାର ଚେଷ୍ଟା

କରିଥାନ୍ତି । ସାମାଜିକ କର୍ତ୍ତବ୍ୟପାଳନ କରି ସୁଦ୍ଧା ଏହା ସମ୍ଭବ ହୋଇପାରେ । ଏପରି କରିବାକୁ ହେଲେ ଆଜିର ପାରିବାରିକ ପରିସ୍ଥିତି ଠାରୁ ଆରମ୍ଭ କରି ଶିକ୍ଷାପଦ୍ଧତି ପର୍ଯ୍ୟନ୍ତ ସମସ୍ତ କ୍ଷେତ୍ରରେ ପରିବର୍ତ୍ତନ ଆଣିବାକୁ ପଡ଼ିବ । ସୃଷ୍ଟିର ମୂଳ ଉତ୍ପାଦନ ହେଉଛି ବୀର୍ଯ୍ୟ । ତାହାର ସାମର୍ଥ୍ୟକୁ ହୃଦୟଙ୍ଗମ କରିବା ଉଚିତ । ତାହାକୁ ରକ୍ଷା କରିବା ଉଚିତ । ଊର୍ଦ୍ଧ୍ୱରେତା ହେବାର ଉପକାରରେ ଉପକୃତ ହୋଇ ମନୁଷ୍ୟର ଯଥାର୍ଥ ସ୍ଥିତିକୁ ବୁଝିବା ସଙ୍ଗେ ସଙ୍ଗେ ତାହା ଲାଭ କରିବା ଆବଶ୍ୟକ । ଯେଉଁମାନେ ନିଜର ବୀର୍ଯ୍ୟରକ୍ଷା କରିଥାନ୍ତି, ତାହାର ବିନ୍ଦୁମାତ୍ର ନଷ୍ଟ କରି ନଥାନ୍ତି, ତାଙ୍କର କୌଣସି ଇଚ୍ଛା ଅପୂର୍ଣ୍ଣ ରହିନଥାଏ । ଲୋକମାନେ ହୁଏତ ତାଙ୍କୁ ଯୋଗସିଦ୍ଧ ମନେ କରିପାରନ୍ତି, କିନ୍ତୁ ଏସବୁ ସିଦ୍ଧ–ବିନ୍ଦୁର ଚମତ୍କାର ପରିଣାମ । ଏହି ଶକ୍ତି ଏବଂ ସିଦ୍ଧି ଆମକୁ ସମର୍ଥ ଓ ଅପରାଜେୟ କରିପାରେ । ଅନ୍ୟ କୌଣସି ଶକ୍ତି ଦ୍ୱାରା ଏପରି ହେବା ସମ୍ଭବ ନୁହେଁ । ଏହା ମାଧ୍ୟମରେ ଅଖଣ୍ଡ ଆନନ୍ଦ ଲାଭ କରିବା ସମ୍ଭବ ହୋଇଥାଏ ।

***




## ଗାୟତ୍ରୀ ତୀର୍ଥ, ଶାନ୍ତିକୁଞ୍ଜ, ହରିଦ୍ୱାର

ଦିବ୍ୟତୀର୍ଥ- ସନ୍ ୧୯୨୬ ରୁ ପ୍ରଜ୍ୱଳିତ ଅଖଣ୍ଡ ଦୀପ, ଅଖଣ୍ଡ ଯଜ୍ଞାଗ୍ନି, ପ୍ରତିଦିନ କୋଟି-କୋଟି ଗାୟତ୍ରୀ ମନ୍ତ୍ରଜପ, ସାଧନା, ଅନୁଷ୍ଠାନ । ଅନୁପମ ଗୁରୁକୁଳ-ଆରଣ୍ୟକ-ପ୍ରତ୍ୟେକ ବ୍ୟକ୍ତିଙ୍କ ମନୋଭୂମି ଅନୁସାରେ ଜୀବନ ସାଧନା ସତ୍ରର ନିରନ୍ତର ସଂଚାଳନ । ନବଯୁଗର ଗଙ୍ଗୋତ୍ରୀ-ବଶିଷ୍ଠ, ବିଶ୍ୱାମିତ୍ର, ଭଗୀରଥ, ପରଶୁରାମ, ଯାଜ୍ଞବଲ୍କ୍ୟ, ଚରକ ଆଦି ରଷି ପରମ୍ପରାର ବିସ୍ତାର । ଆଧ୍ୟାତ୍ମିକ ସେନିଟୋରିୟମ-ପ୍ରତ୍ୟକ୍ଷ ପରାମର୍ଶ ଏବଂ ପତ୍ରାଚାର ଦ୍ୱାରା ନିତ୍ୟ ହଜାର-ହଜାର ସାଧକ-ପରିଜନ ମାନଙ୍କୁ ମାର୍ଗଦର୍ଶନ ।



ବିଚାରକ୍ରାନ୍ତି ଅଭିଯାନ, ଶାନ୍ତିକୁଞ୍ଜ ହରିଦ୍ୱାର

Book code- OR 126